**ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ**




*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**



**୬୪ ବର୍ଷ, ତୃତୀୟ ସଂଖ୍ୟା**
**ଅକ୍ଟୋବର, ୨୦୧୪**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧,**
**୨୪୨୨୫୯୭, ୨୪୨୦୦୭୫**
*email :*
nandaanasuya@hotmail.com
www:odisha publication.com



**ଗଳ୍ପ ଓ ଜୀବନୀ**



**କବିତା**



**ଭ୍ରମଣ କାହାଣୀ**



**ଜ୍ଞାନ-ବିଜ୍ଞାନ**



**ମନୋରଞ୍ଜନ**



## ଆମ ଚିଠି ମୁଣିରୁ

**ଗଙ୍ଗାଧର ମେହେର କନିଷ୍ଠ ମହାବିଦ୍ୟାଳୟ, ସମ୍ବଲପୁରରୁ ଅଧ୍ୟାପକ ରାଜେନ୍ଦ୍ର କୁମାର ବିଶ୍ୱାଳ**-- ଅଗଷ୍ଟ ମାସର ସଂସାର ପଢ଼ିଲି । ଏଥରର 'ଭାବି ଦେଖନ୍ତୁ' ଭଲ ହେଇଛି । ସୁବର୍ଣ୍ଣ ସୁଯୋଗ, ଶଙ୍କରଙ୍କର ଅନୁଦିତ ଗଳ୍ପ 'ବିଦ୍ୟାଳୟ ଜୀବନ', ଆକାଶଛତାର ଇତିହାସ, ବ୍ୟାକ୍ଟେରିଆଙ୍କ କଥା, ମୃତ୍ୟୁ ଯନ୍ତାରେ ଦୁଇଦିନ ଇତ୍ୟାଦି ସହ ଭ୍ରମଣ କାହାଣୀ, ଜ୍ଞାନବିଜ୍ଞାନ ଇତ୍ୟାଦି ଖୁବ୍ ଭଲ ହୋଇଛି । 'ବୁଦ୍ଧିରୁ ସିଦ୍ଧି'କୁ ପ୍ରଥମ ସ୍ଥାନରେ ନ ଦେଇଥିଲେ ଭଲ ହୋଇଥାନ୍ତା । 'ଅନୁତାପର ନିଆଁ' ଶିଶୁ ଉପଯୋଗୀ ହୋଇପାରିଲା ନାହିଁ ।

**ନୀରବତୀ ଭବନ, ବସଲା, ଚନ୍ଦନଭାଟି, ବଲାଙ୍ଗିରରୁ ଗୋପୀନାଥ ଦଣ୍ଡସେନା**-- ସଂସାର ୬୩ ବର୍ଷ ସାରି ୬୪ ବର୍ଷରେ ପାଦ ଥାପିଲାଣି, ତଥାପି ଜ୍ଞାନ ବାଣ୍ଟି ଚାଲିଛି ପିଲାଠୁ ବୁଢ଼ା ଯାଏଁ । ଏହା କେବଳ ଶିଶୁ-କିଶୋରଙ୍କ ପାଇଁ ନୁହେଁ, ବୟସ୍କମାନେ ମଧ୍ୟ ଏଥିରୁ ଅନେକ ତଥ୍ୟ ପାଇପାରୁଛନ୍ତି । ପ୍ରତିଥର ପ୍ରଚ୍ଛଦ ଚିତ୍ର ନିଆରା । ଯାହା କେବେ ଭାବି ନ ଥିବେ, ତାହା ପ୍ରଚ୍ଛଦରେ ମିଳେ । ଜନ୍ମଦିନର ଶୁଭ କାମନା ଜଣାଉଛି ।

**ମାମୁରିଆ, ଛେଣ୍ଡିପଦା, ଅନୁଗୋଳରୁ ବି. ନିରୁପମା** -- ସଂସାରରେ ସନ୍ନିବେଶିତ-- ଆକାଶଛତା, ମାଲେସିଆ, ଭ୍ରମଣ, ମୃତ୍ୟୁ ଯନ୍ତାରେ ଦି'ଦିନ, ଧନ୍ୟ ଏମିତି ପିଲା, ବ୍ୟାକ୍ଟେରିଆ, ବିଦ୍ୟାଳୟ ଜୀବନ ଭଲ ହୋଇଛି । ପ୍ରଚ୍ଛଦ ଓ ଭାବି ଦେଖନ୍ତୁ ଖୁବ୍ ମନୋରମ ଓ ସମୟୋପଯୋଗୀ ।

**କୋରାପୁଟ କଲେକ୍ଟରେଟ୍ ପରିସର, କୋରାପୁଟରୁ ଅରୁଣ କୁମାର ପଟ୍ଟନାୟକ**-- ଚଳିତ ମାସର ସଂସାର ପାଠ କଲି । ଦୀର୍ଘ ବର୍ଷ ଧରି ସାହିତ୍ୟ ତଥା ସଂସ୍କାରର ସଂସାର ତା'ର ମହନୀୟତା ସଂଚାର କରି ଚାଲିଛି । ଏହା ଅତି ଆନନ୍ଦର କଥା । ଆପଣମାନଙ୍କୁ କୋଟିଏ ଧନ୍ୟବାଦ ଓ ଶୁଭେଚ୍ଛା ।

**ନିମାଇଁ କୁଟୀର, ରେମୁଣା, ବାଲେଶ୍ୱରରୁ ସାରଦାନନ୍ଦନ ପାଲିତ**-- ଅଗଷ୍ଟ ମାସର ସଂସାର ପାଠକଲି । ଅନୁତାପର ନିଆଁ, ଅନାବନା କବିତା, ବରଷାନାନୀର ବାହାଘର, ଧନ୍ୟ ଏମିତି ପିଲା, ଆମ୍ବଗଛର କଥା ଇତ୍ୟାଦି ମୋ ମନକୁ ସ୍ପର୍ଶ କରିବା ସହ ଆନନ୍ଦ ପ୍ରଦାନ କରିଛି । ସଂସାର ଏଭଳି ଶିକ୍ଷଣୀୟ ସଚେତନତାମୂଳକ ପ୍ରେରଣାଦାୟୀ ଲେଖା ମାଧ୍ୟମରେ ପିଲାଠୁ ବୁଢ଼ାଯାଏ ଜ୍ଞାନବୃଦ୍ଧି କରି ଚାଲିଥାଉ ।

### ❀❀ ଅଭିନନ୍ଦନ ❀❀

ଆମର ପରିଚିତ ଲେଖକ ତଥା ବିଶିଷ୍ଟ ଶିଶୁ-ସାହିତ୍ୟିକ **ଦାସ ବେନହୁର**ଙ୍କୁ ତାଙ୍କର ସାମଗ୍ରିକ କୃତି ପାଇଁ ଚଳିତ ବର୍ଷର କେନ୍ଦ୍ର ସାହିତ୍ୟ ଏକାଡେମୀ ପକ୍ଷରୁ ଶିଶୁସାହିତ୍ୟ ପାଇଁ ପୁରସ୍କୃତ କରାଯାଇଛି ଏବଂ ଲେଖକ ତଥା ଆଦର୍ଶ ଶିକ୍ଷକ **ଡ. ବିଜୟ ଚନ୍ଦ୍ର ମହାରଣା**ଙ୍କୁ ଗଂଜାମ ଜିଲ୍ଲାର ଆଦର୍ଶ ଶିକ୍ଷକ-୨୦୧୧ରେ ସମ୍ମାନିତ କରାଯାଉଛି । ଏ ଗୌରବ 'ସଂସାର'ର ଗୌରବ । ସେମାନଙ୍କର ଚଲାପଥ କୁସୁମିତ ହେଉ-- ଏତିକି କାମନା ସହ ସେମାନଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛୁ ।

ଆମର ଶ୍ରଦ୍ଧେୟ ପାଠକ/ପାଠିକା, ଲେଖକ/ଲେଖିକା ତଥା ଗ୍ରାହକ ଓ ଏଜେଣ୍ଟ-ମାନଙ୍କୁ ଶାରଦୀୟ ଅଭିନନ୍ଦନ ।

--**ସଂସାର 'ପରିବାର'**

***ବନ୍ୟାପ୍ରପୀଡ଼ିତ କାଶ୍ମୀରବାସୀଙ୍କ ଦୁଃଖ-ଦୁର୍ଦ୍ଦଶାର ତୁଳନା ନାହିଁ । ଏ ଦୁର୍ଦ୍ଦିନରେ ସେମାନଙ୍କର ମନୋବଳକୁ ବୃଦ୍ଧି କରିବା ପାଇଁ ଈଶ୍ୱର ସେମାନଙ୍କୁ ସାହସ ଓ ଧୈର୍ଯ୍ୟ ପ୍ରଦାନ କରନ୍ତୁ । ଆସନ୍ତୁ, ସେମାନଙ୍କ ଦୁଃଖରେ ସମଭାଗୀ ହୋଇ ସେମାନଙ୍କୁ ଉତ୍ସାହ ପ୍ରଦାନ କରିବା ।***

**ଏ ମାସର ପ୍ରଚ୍ଛଦ-**ଧଳା ଠେକୁଆର ସମୁଦ୍ର ଅତିକ୍ରମ ବିଷୟରୁ ପ୍ରଦତ୍ତ ।

# କଳା ବାଙ୍ଗରା

ମୂଳ ଇଂରାଜୀ : ଚନ୍ଦ୍ରମଣି ନାରାୟଣ ସ୍ୱାମୀ
ଅନୁବାଦ : ବିଦ୍ୟୁତ୍‌ପ୍ରଭା ଗନ୍ତାୟତ

ବହୁତ ଦିନ ତଳର କଥା । ପୁରୀଠାରେ ସଦାନନ୍ଦ ଆଚାର୍ଯ୍ୟ ନାମରେ ଜଣେ ପଣ୍ଡିତ ଗୋଟିଏ ଗୁରୁକୁଳ ସ୍ଥାପନ କରିଥିଲେ । ସେ ଜଣେ ଭଲ ଗୁରୁ ଥିଲେ । ତାଙ୍କର ଛାତ୍ରମାନେ ଓ ସାଧାରଣ ଲୋକେ ତାଙ୍କୁ ବହୁତ ସମ୍ମାନ କରୁଥିଲେ । ଶିଷ୍ୟମାନେ ସଦାନନ୍ଦଙ୍କ ତତ୍ତ୍ୱାବଧାନରେ ଜ୍ଞାନ ଆହରଣ ଓ ଚରିତ୍ର ଗଠନ ଦିଗରେ ଉପଯୁକ୍ତ ଶିକ୍ଷା ପାଇ ନିଜକୁ ଧନ୍ୟ ମନେକରୁଥିଲେ । ଆଚାର୍ଯ୍ୟ ସଦାନନ୍ଦ କିନ୍ତୁ ତାଙ୍କ ପାରିବାରିକ ଜୀବନରେ ବହୁତ ଦୁଃଖୀ ଥିଲେ। କାରଣ ତାଙ୍କର ଏକମାତ୍ର ପୁତ୍ର କାହ୍ନୁ ମୂକ ଥିଲା । ଶିଷ୍ୟମାନେ ମନ୍ତ୍ରୋଚ୍ଚାରଣ ଓ ଶ୍ଳୋକାବୃତ୍ତି କଲାବେଳେ କାହ୍ନୁ କିଛି ହେଲେ ଶବ୍ଦ ଉଚ୍ଚାରଣ କରି ନ ପାରି କେବଳ ଜଳଜଳ କରି ଚାହିଁ ରହୁଥିଲା, ଯାହା ଆଚାର୍ଯ୍ୟଙ୍କର ମନରେ ଗଭୀର କଷ୍ଟ ଜାତ କରୁଥିଲା ।

କିନ୍ତୁ ଆଚାର୍ଯ୍ୟ ମହାଶୟ ସବୁ ଆଶା ମନରୁ ପୋଛି ଦେଇ ନ ଥିଲେ । ସେ କହୁଥିଲେ, "ଯଦି ସ୍ୱୟଂ ପରଂବ୍ରହ୍ମ ଚାହାନ୍ତି, ତା'ହେଲେ କାହ୍ନୁ ଦିନେ ନା ଦିନେ କଥା କହିବ।" ସେ କହୁଥିଲେ-- ମୂକଂ କରୋତି ବାଚାଳଂ, ପଙ୍ଗୁ ଲଂଘୟତେ ଗିରି..... ଇତ୍ୟାଦି । ଆଚାର୍ଯ୍ୟ କାହ୍ନୁକୁ ଖଡ଼ି ଧରି ପ୍ରଥମେ ଓଁ, ପରେ ଶ୍ରୀ, ଧୀ, ରସ୍ତୁ ଇତ୍ୟାଦି ଲେଖା ଶିଖାଇବା ଆରମ୍ଭ କଲେ । ଗୁରୁକୁଳର ଶ୍ରୀଜଗନ୍ନାଥଙ୍କର ମୂର୍ତ୍ତି ଆଗରେ ବାଲି ବିଛାଇ ପିଲାମାନେ ଅକ୍ଷର ଶିଖିଥାନ୍ତି। କାହ୍ନୁ ମଧ୍ୟ ସେହିଠାରେ ବାଲି ବିଛାଇ ଓଁ ଅକ୍ଷରକୁ ବାରମ୍ବାର ଆଙ୍ଗୁଠିରେ ଲେଖି ମଡ଼ାଉଥାଏ । ଓଁ ଶବ୍ଦ ଉଚ୍ଚାରଣ କରିବା ପାଇଁ ମୁଖଭଙ୍ଗୀ କରେ, କିନ୍ତୁ ଶବ୍ଦ ପାଟିକୁ ପଇଟେ ନାହିଁ । କାହ୍ନୁର ଏ ଅଭ୍ୟାସ ସବୁଦିନ ଚାଲିଥାଏ । ଆଚାର୍ଯ୍ୟ ଭାବନ୍ତି, ଶ୍ରୀଜଗନ୍ନାଥଙ୍କ ନିକଟରେ ପିଲାଟିର ଏ ଭକ୍ତି ଦିନେ ନା ଦିନେ ଠାକୁରଙ୍କ ମନ କିଣିପାରିବ । ଠାକୁର ତା' ପ୍ରତି ସଦୟ ହେବେ । ସେ ଅନ୍ୟ ଶିଷ୍ୟମାନଙ୍କ ପରି ଗୁରୁକୁଳରେ ପଢ଼ି ସବୁ ବିଦ୍ୟାରେ ପାରଙ୍ଗମ ହେବ ।

ଏଭଳି ଅନେକ ଦିନ ବିତିଲା । କାହ୍ନୁ ପନ୍ଦର ବର୍ଷ ବୟସରେ ପଦାର୍ପଣ କଲା । ହଠାତ୍ ଦିନେ ଆଚାର୍ଯ୍ୟ ପରଲୋକ ଗମନ କଲେ । କାହ୍ନୁର ମା' ତ ତା'ର ପିଲାଦିନରୁ ମରି ଯାଇଥିଲେ, ଏଣୁ ବାପା ଓ ମାଙ୍କ ବିନା କାହ୍ନୁ ପୂରା ଅନାଥ ହୋଇଗଲା । କେହି ତା'ର ଭଲମନ୍ଦ ବୁଝିବାକୁ ରହିଲେ ନାହିଁ । ଆଚାର୍ଯ୍ୟଙ୍କ ଶିଷ୍ୟମାନେ ମଧ୍ୟ ମୁରବି-ବିହୀନ ଗୁରୁକୁଳ ଛାଡ଼ି ନିଜ ନିଜ ଘରକୁ ଚାଲିଗଲେ । ସେମାନେ କାହ୍ନୁକୁ ଏକୁଟିଆ ସେଠାରେ ଛାଡ଼ି ଯିବାକୁ ଚାହୁଁ ନ ଥିଲେ, କିନ୍ତୁ ଆଉ ତ କିଛି ଉପାୟ ନ ଥିଲା ।

ଗୁରୁକୁଳ ଶୂନ୍ୟ ହୋଇଯିବା ପରେ ବାଳକ କାହ୍ନୁ ଜଗନ୍ନାଥଙ୍କ ମୂର୍ତ୍ତିଟାକୁ ଧରି କାନ୍ଦିବାକୁ ଲାଗିଲା । ଏପରି ବହୁତ ସମୟ ବିତିଗଲା । କାହ୍ନୁ ଦେଖିଲା, କେହି ଜଣେ କଳା ଓ ବାଙ୍ଗରା ମଣିଷ ତା' ଆଡ଼କୁ ଆସୁଛନ୍ତି । ସେ କିଛି ବୁଝିପାରିଲା ନାହିଁ । ତାକୁ ଆଗରୁ ସିଏ କେବେ ଦେଖି ନ ଥିଲା ।

କଳାବାଙ୍ଗରା ମଣିଷଜଣଙ୍କ ତା'ପାଖକୁ ଆସି ଇସାରାରେ ତାକୁ ଚୁପ୍ ହେବାକୁ କହିଲେ । ତା' ହାତ ଧରି ତାଙ୍କ ସାଙ୍ଗରେ ଚାଲିବାକୁ ନିର୍ଦ୍ଦେଶ ଦେଲେ । ତାଙ୍କ

ହାତର ପରଶ କାହ୍ନୁକୁ ଖୁବ୍ ନିଜର ଭଳି ଲାଗିଲା । ସେ ଜଗନ୍ନାଥଙ୍କ ମୂର୍ତ୍ତିଟାକୁ କାଖରେ ଜାକି ତାଙ୍କ ସହିତ ଗୋଟିଏ ଗୋଟିଏ ଚାଲିଲା ।

ସେ କଳାଲୋକ କାହ୍ନୁକୁ ପୁରୀର ଜଣେ ଧନୀଲୋକଙ୍କ ଘରକୁ ନେଇଗଲେ । ଧନିକ ବ୍ୟକ୍ତିଙ୍କୁ ଅନୁରୋଧ କରି କହିଲେ, "ଏ ଅନାଥ ପିଲାଟିକୁ ଆପଣ ଆଶ୍ରୟ ଦିଅନ୍ତୁ । ପିଲାଟି ମୂକ । କିନ୍ତୁ ଗାଈଗୁହାଳ ସଫାସୁତୁରା କରିବା ଓ ଦାନାପାଣି ଦେଇ ଗାଈମାନଙ୍କର ଯତ୍ନନେବା କାମ ସେ କରିପାରିବ ।" ଧନିକ ବ୍ୟକ୍ତି ଖୁବ୍ ଦୟାଳୁ ଥିଲେ । ସେ କାହ୍ନୁକୁ ନିଜ ଘରେ ଚାକର ଭାବରେ ରଖିବା ପାଇଁ ରାଜି ହେଲେ । ତା'ପରେ ସେହି ବାଙ୍ଗରା କଳାଲୋକଟି ସେଠାରୁ ଚାଲିଗଲେ ।

କାହ୍ନୁ ମନଲଗାଇ କାମ କଲା । ଗାଈମାନଙ୍କର ସେବା କରିବାକୁ ସେ ଖୁବ୍ ଭଲପାଉଥିଲା । ଗାଈମାନେ ମଧ୍ୟ ତା'ପରି ମୂକ; କିନ୍ତୁ ସେ ଗାଈମାନଙ୍କ ହମ୍ବାରଡ଼ି ଓ ମୁଣ୍ଡ-କାନ ହଲାଇବାର ଅର୍ଥ ବୁଝିପାରୁଥିଲା । ଘରର ଅନ୍ୟାନ୍ୟ ଚାକରମାନେ କାହ୍ନୁକୁ ନେଇ ବହୁତ ଥଟ୍ଟାମଜା କରୁଥିଲେ । କିନ୍ତୁ କାହ୍ନୁ ସେସବୁରେ କାନ ନ ଦେଇ ଗାଈମାନଙ୍କୁ ହିଁ ନିଜର ପ୍ରକୃତ ସାଥୀ ବୋଲି ଭାବୁଥିଲା ଓ ଦିନଯାକର କାମ କରି ରାତିରେ ଜାଲେଣି ରଖାହେଉଥିବା ଘରର କୋଣରେ ଜଗନ୍ନାଥଙ୍କର ମୂର୍ତ୍ତିକୁ କୁଣ୍ଢେଇ ଧରି ଶୋଇ ପଡୁଥିଲା ।

ଥରେ ତା' ମାଲିକଙ୍କ ସ୍ତ୍ରୀଙ୍କର ଗୋଟିଏ ମୂଲ୍ୟବାନ ହୀରାର ମୁଦି କୁଆଡ଼େ ହଜିଗଲା । ମାଲିକ ଓ ତାଙ୍କ ସ୍ତ୍ରୀ ସବୁ ଚାକରବାକରଙ୍କୁ ଡାକି ପଚରାଉଚରା କଲେ । ମାଲିକ ଓ ମାଲିକାଣୀଙ୍କ ମନରେ ସମସ୍ତ ସନ୍ଦେହ ରାଧା ଉପରେ ଠୁଳ ହୋଇ ପଡ଼ିଲା । କାରଣ ରାଧା ମାଲିକାଣୀଙ୍କର ପୋଇଲି ଥିଲା । ତା'ହାତରେ ମାଲିକାଣୀଙ୍କର ଦାମିକା ଗହଣା ଓ ଲୁଗାପଟା ସନ୍ଦୁକରୁ କାଢ଼ିବା, ରଖିବା ଇତ୍ୟାଦି କାରବାର ହେଉଥିଲା । ସେ ମାଲିକାଣୀଙ୍କର ଭିତର ଗମ୍ଭିରାକୁ ଅବାଧରେ ଯିବାଆସିବା କରୁଥିଲା । ରାଧା ଜଣେ ଗରିବ ବିଧବା ସ୍ତ୍ରୀଲୋକ ଥିଲା । ବୟସ ତିରିଶ ପାଖାପାଖି । ରାଧା ଉପରେ ସମସ୍ତଙ୍କର ସନ୍ଦେହ ହେବାରୁ ସେ କାନ୍ଦିବାକୁ ଲାଗିଲା । କେତେ ରାଣ ଖାଇ କହିଲା-- ମୁଦି ବିଷୟରେ ସେ କିଛି ଜାଣେନାହିଁ ବୋଲି; କିନ୍ତୁ କେହି ତା' ଠାରେ ବିଶ୍ୱାସ କଲେନାହିଁ । ମାଲିକ ଅନ୍ୟ ଚାକରମାନଙ୍କୁ ଡାକି କହିଲେ, "ରାଧାକୁ ନେଇ ଗୋଟିଏ ଅନ୍ଧାରୁଆ ଘରେ ଭର୍ତ୍ତି କରି ବାହାରୁ କବାଟ କିଳିଦିଅ । ଯେ ପର୍ଯ୍ୟନ୍ତ ସିଏ ନିଜର ଦୋଷ ମାନି ମୁଦିଟି ନ ଫେରାଇ ଦେଇଛି, ତାକୁ ଖାଇବାପିଇବା କିଛି ଦିଅନାହିଁ ।"

ପ୍ରକୃତରେ ରାଧା ମୁଦିଟି ନେଇ ନ ଥିଲା । ମୁଦିଟି ଘରର ରାନ୍ଧୁଣିଆ ହଡ଼ପ କରିଥିଲା । ମାଲିକାଣୀ ଗାଧୋଇବାବେଳେ ମୁଦିଟି ହାତରୁ ଖସିପଡ଼ି ଗାଧୁଆ ପାଣି ସହ ନାଳ ବାଟଦେଇ ଚାଲିଯାଇଥିଲା ।



ରୋଷେୟା ଯେତେବେଳେ ଦେଖିଲା, ନାଳରେ ମୁଦିଟି ପଡ଼ିଛି, କିଛି ନ କହି ମୁଦିଟା ଚୁପ୍‌ଚାପ୍ ଉଠାଇ ନେଇଗଲା। ମୁଦିଟିକୁ ନେଇ ଚାଉଳ ଘୁମ ଭିତରେ ଲୁଚାଇଦେଲା। ଏଠାରେ ତା' ଛଡ଼ା ଆଉ କାହାର ପ୍ରବେଶ ନାହିଁ। ଏଣୁ ସେ ନିଦକ ହୋଇ ରହିଥିଲା। ଭାବୁଥିଲା କେତେଦିନ ପାଇଁ ଗାଁ'କୁ ଯିବାକୁ ମାଲିକଙ୍କୁ ଅନୁମତି ମାଗିବ। ଅନୁମତି ମିଳିଲେ ମୁଦିଟି ନେଇ ଗାଁରେ ଯାହା ଇଚ୍ଛା ତା' କରିବ। ତାକୁ ତ ମୁଦିଟି ନାଳରୁ ଉଠାଇନେବା କେହି ଦେଖିନାହାନ୍ତି।

କିନ୍ତୁ ରୋଷେୟାର ଧାରଣା ଭୁଲ୍ ଥିଲା। ସବୁଦିନ କାହ୍ନୁ ରୋଷେଇ ଘରକୁ ଯାଇ ପେଜ ଆଣେ ଗାଈମାନଙ୍କୁ ଦେବା ପାଇଁ। ସେଦିନ ସେ ଦେଖିଲା ଯେ ରୋଷେୟା କ'ଣ ଗୋଟିଏ ଚକ୍‌ଚକ୍ ଜିନିଷ ନଳାରୁ ଗୋଟେଇ ଆଣିଲା ଓ ଚାରିଆଡ଼କୁ ନିରେଖି ଚୁପ୍‌ଚାପ୍ ଚାଉଳ ଘୁମରେ ଲୁଚାଇଦେଲା। ସେ ମୂକ ଥିବାରୁ ରୋଷେୟାକୁ କିଛି ପଚାରି ପାରିଲା ନାହିଁ। ତା'ଛଡ଼ା ରୋଷେୟା ବୟସରେ ବଡ଼ ଆଉ କାହ୍ନୁ ତ ମୂକ ଅସହାୟ ଚାକର ପିଲାଟିଏ।

ରାଧା ଏବେବି କାନ୍ଦି କାନ୍ଦି କହୁଥାଏ-- ସିଏ ମୁଦିଟା ନେଇନାହିଁ। ଠିକ୍ ଏ ସମୟରେ ଗୋଟିଏ ଅଦ୍ଭୁତ ଘଟଣା ଘଟିଲା। ମାଲିକଙ୍କ ଚାକରମାନେ ରାଧାକୁ ଅନ୍ଧାର ଘରକୁ ଟାଣି ଟାଣି ନେଉଥିଲେ। ହଠାତ୍ ସେଇ କାଳିଆ ବାଙ୍ଗରା ଲୋକଟି କାହ୍ନୁର ଆଗକୁ ଆସି ତା'ର କାନ୍ଧକୁ ହଲାଇଦେଇ କହିଲେ, ''ତୁ ତ ସତ କଥାଟା ଜାଣିଛୁ, କହିଦେଉନୁ, କହ କହ।''

କାହ୍ନୁ କହିବା ପାଇଁ ମୁହଁ ଖୋଲିଲା କିନ୍ତୁ ଶବ୍ଦ ବାହାରୁ ନଥାଏ। ସେହି କାଳିଆ ଲୋକଜଣଙ୍କ ତାର ତଣ୍ଟି ପାଖକୁ ଆସ୍ତେ ଚିପିଦେଲେ ଓ କହିଲେ, "ସତକଥା ସମସ୍ତେ ଜାଣିବା ଉଚିତ୍। ନିର୍ଦ୍ଦୋଷ ଲୋକ ଦଣ୍ଡ ପାଇବା ଉଚିତ ନୁହେଁ। କହ, ଯାହା ଦେଖିଛୁ କହି ଦେ।''

କାହ୍ନୁ ସେ ଲୋକଟିର ଗର୍ଜନଭରା ଆଦେଶ ଶୁଣି ଡରିଗଲା। ଚିତ୍କାର କରି ଉଠିଲା। ସେ ବାଙ୍ଗରା ଲୋକ ତା' ତଣ୍ଟିକୁ ଆହୁରି ଜୋର୍‌ରେ ଚିପିଦେଲେ ଓ କହିଲେ, ''କହ, କହ !''

କାହ୍ନୁ ଗଁ ଗଁ ଗର୍ଜିଉଠିଲା ଓ କାଶି ପକାଇଲା। ଚିତ୍କାର କରି ସ୍ପଷ୍ଟ ସ୍ୱରରେ କହି ଉଠିଲା, "ରୋଷେୟା ସେ ମୁଦିଟା ଚାଉଳ ଘୁମରେ ଲୁଚାଇଛି।''

ମାଲିକାଣୀ ସିଧା ରୋଷେଇ ଘରକୁ ଦୌଡ଼ିଯାଇ ଚାଉଳ ଘୁମରେ ହାତ ପୂରାଇ ଖୋଜିଲେ ଓ ମୁଦିଟା ପାଇ ପାଟିକରି କହିଲେ, ''ହେଇ ହେଇ ସେ ମୁଦି !''

ଧନିକଜଣଙ୍କ କାହ୍ନୁକୁ ଡାକି ପଚାରିଲେ, ''କାହ୍ନୁ ତୁ କେମିତି ଜାଣିଲୁ ଏ କଥାଟା ?''



କାହ୍ନୁ କହିଲା, ''ଆଜ୍ଞା ସେଦିନ ମୁଁ ଗାଈମାନଙ୍କୁ ପେଜ ଦେବା ପାଇଁ ରୋଷେଇ ଘରକୁ ଯାଇଥିଲି। ସେତେବେଳେ ଦେଖିଲି, ରୋଷେୟା ଭାଇ ପାଣି ନାଳରୁ କ'ଣ ଗୋଟିଏ

ଚକଚକ୍ ଜିନିଷ ଗୋଟେଇ ଚାଉଳ ଘୁମ ଭିତରେ ରଖିଲେ।''

ଏଥର ମାଲିକ ଚେତା ପାଇଲା ପରି କହିଲେ, ''ଆରେ କାହ୍ନୁ ତୁ ତ କଥା କହିପାରୁଛୁ ! ଆଉ ସେ କଳା ବାଙ୍ଗରା ଲୋକଟା କେଉଁଠୁ ଆସି ତୋତେ ଏକଥା କହିବା ପାଇଁ ବାଧ୍ୟ କରୁଥିଲା ? ସିଏ ଏବେ କୁଆଡ଼େ ଗଲା ?''

ମାଲିକଙ୍କର ଲୋକମାନେ ଚାରିଆଡ଼େ ସେ ଲୋକଟିକୁ ଖୋଜିଲେ, କିନ୍ତୁ କେଉଁଠି ତା'ର ଚିହ୍ନବର୍ଣ୍ଣ ପାଇଲେ ନାହିଁ । ସେ ଯେଉଁଭଳି ଝଡ଼ ପରି ଆସି ଦେଖାଦେଇଥିଲା, ସେହିଭଳି ବତାସ ପରି କେଉଁଆଡ଼େ ଉଭେଇଗଲା । କେହି ଜାଣିପାରିଲେ ନାହିଁ।

ମାଲିକ ଟିକିଏ ଭାବି କହିଲେ, ''ସେ ଲୋକଟା ନିଶ୍ଚୟ ଜଗାକାଳିଆ, ମାନେ ସ୍ୱୟଂ ଶ୍ରୀଜଗନ୍ନାଥ ଥିଲେ। ସେ ହିଁ ମୂକକୁ ମୁଖର କରିପାରନ୍ତି। ପଙ୍ଗୁକୁ ପର୍ବତ ଲଂଘିବାର କ୍ଷମତା ପ୍ରଦାନ କରିପାରନ୍ତି।'' ସେଠାରେ ସମସ୍ତେ ଏହା ଶୁଣି ତାଟକା ହୋଇଗଲେ।

''ଭଗବାନ ତୋର ମଙ୍ଗଳ କରନ୍ତୁ ରେ କାହ୍ନା, ତୁ ମୋର ମାନ ରଖିଲୁ। ଏତେ ବଡ଼ ନିନ୍ଦାରୁ ବଞ୍ଚେଇଲୁ। ତୁ ଯଦି ଚାହୁଁ, ଆଜିଠାରୁ ମୋ ପୁଅ ହୋଇ ମୋ ପାଖରେ ରହିବୁ।'' ରାଧା କହିଲା।

ଶ୍ରୀଜଗନ୍ନାଥଙ୍କ କୃପାରୁ ମୂକ ନିଃସହାୟ ବାଳକ କାହ୍ନୁ ତା'ର ବାକ୍‌ଶକ୍ତି ଫେରିପାଇଲା ଓ ଦରଦୀ ମା'ଟିଏ ପାଇ ଖୁସି ହେଲା। ବଡ଼ ହୋଇ କାହ୍ନୁ ଜମିଦାରଙ୍କର ବିଶ୍ୱସ୍ତ ଗୁମାସ୍ତା ହେଲା ଓ ରାଧାର ପୁଅ ହୋଇ ମା'ର ସମସ୍ତ ଦୁଃଖ ଦୂର କଲା। କାହ୍ନୁର ବାପା ଆଚାର୍ଯ୍ୟ ମହାଶୟଙ୍କର ବିଶ୍ୱାସ ମଧ୍ୟ ସତ୍ୟରେ ପରିଣତ ହେଲା।

*'ପୂର୍ବରାଗ', ୬-ଏ, ଷ୍ଟେସନ୍ ସ୍କୋୟାର, ୟୁନିଟ୍-୩, ଭୁବନେଶ୍ୱର-୧*

***



(୧୯୫୫ ମସିହା)

# ବିଶିଷ୍ଟ ଅତିଥି

ଶ୍ରୀ ଉମାକାନ୍ତ ମହାନ୍ତି

ଗତମାସ ୫ ତାରିଖ କଥା କହୁଛି। ସେଦିନ ଅପରାହ୍ଣ ୪ଟା ବେଳେ ଆମ ଘରକୁ ଜଣେ ବିଶିଷ୍ଟ ଅତିଥି ଆସିଗଲେ । ସେତେବେଳେ ଘରେ ଆମେ ସ୍ୱାମୀ-ସ୍ତ୍ରୀ ଦୁଇଜଣଙ୍କ ବ୍ୟତୀତ ପୁଅ-ଝିଅ, ବୋହୂ ପ୍ରଭୃତି ଉପସ୍ଥିତ ଥିଲେ।

ତାଙ୍କ କଥାରୁ ତାଙ୍କ ବୟସ କଥା ଜାଣିବାକୁ ପାଇଲୁ। ତାଙ୍କୁ ୬୨ ବର୍ଷ ପୂରିଯାଇ ୬୩ ବର୍ଷ ଚାଲୁଥାଏ; ହେଲେ ତାଙ୍କୁ ସେ ପର୍ଯ୍ୟନ୍ତ ବାର୍ଦ୍ଧକ୍ୟ ଛୁଇଁ ପାରି ନ ଥାଏ। ବାର୍ଦ୍ଧକ୍ୟ ତାଙ୍କ ପାଖେ ହାର ମାନିଥାଏ। ବରଂ ସେ ଯୁବସୁଲଭ ପ୍ରାଣପ୍ରାଚୁର୍ଯ୍ୟରେ ଫୁଲି ଫୁଲି ଉଠୁଥାଆନ୍ତି; କାର୍ଯ୍ୟ କରିବାର ଅଫୁରନ୍ତ ଶକ୍ତିରେ ସେ ମାତି ଉଠୁଥାଆନ୍ତି।

ତାଙ୍କ ଚେହେରାରେ ମଧ୍ୟ ତାରୁଣ୍ୟ ଭରି ରହିଥିବା ପରି ମନେହେଉଥାଏ। ପେଟଟି ବେଶ୍ ଫୁଲିଲା ପରି ମନେ ହେଉଥାଏ। ହାତଗୋଡ଼ ଇତ୍ୟାଦି ଅଙ୍ଗପ୍ରତ୍ୟଙ୍ଗର ଅନୁରୂପ ଭାବେ ବୃଦ୍ଧି ହୋଇଛି ବୋଲି ମଧ୍ୟ ଜଣାଯାଉଥାଏ।

ସେଦିନ ଘରେ ଯାହାର ଯାହା କାମ ବାକି ପଡ଼ିଥିଲା, ସେସବୁକୁ ପଛରେ ପକାଇଦେଇ ଆମେ ତାଙ୍କୁ ଘେରି ବସିଗଲୁ। ତା'ପରେ ସେ ତାଙ୍କ କଥା ଆରମ୍ଭ କଲେ। ତାଙ୍କ ପେଟ ଭିତରେ ଯାହା ଥିଲା, ଗୋଟାକ ପରେ ସେସବୁ କାଢ଼ି ଚାଲିଲେ।

ତାଙ୍କ ପେଟ ଭିତରେ କେଜାଣି କେତେ ଗପ, କବିତା, ଭ୍ରମଣ କାହାଣୀ, ପୁରାଣ କାହାଣୀ, ବିଜ୍ଞାନ କଥା, ହସକଥା, ଶବ୍ଦଧନ୍ଦା, ବୁଦ୍ଧି ପରୀକ୍ଷାର କଥା, ଦେଶଦୁନିଆର ଖବର ଅନ୍ତର, ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ, ଜୀବଜନ୍ତୁଙ୍କ କଥା, ଖେଳକୁଦ କଥା ରହିଥିଲା, ଆମେ ସେଦିନ ଦେଖି ଆଶ୍ଚର୍ଯ୍ୟ ହୋଇଗଲୁ। ଏହା ଆମକୁ ଏକପ୍ରକାର କିମିଆ ଭଳି ଲାଗିଲା।

ଆଉ ହଁ.......ଏଥି ସହିତ ଗୁଡ଼ାଏ ଚିତ୍ର ମଧ୍ୟ ସେ ଆମକୁ ଦେଖାଇ ଚାଲିଲେ। ଆଉ ସବୁଠାରୁ ବିଶେଷ ଆଶ୍ଚର୍ଯ୍ୟ କଥା ଯେ ସେଦିନ ସେ ଆମକୁ ଯାହା ଯାହା କହିଗଲେ, ସବୁଗୁଡ଼ିକ ଅତ୍ୟନ୍ତ ଶିକ୍ଷାପ୍ରଦ, ସବୁଦିନ ମନେରଖିବା ଭଳି କଥା। ସେଦିନ ତାଙ୍କ କଥାରେ ଗୋଟିଏ ବି ବାକ୍ୟ ଅପ୍ରାସଙ୍ଗିକ କି ଅଦରକାରୀ ଥିବା ଭଳି ମନେହେଉ ନ ଥିଲା। ଆଃ...ଜ୍ଞାନର କି ବିଶାଳ ଭଣ୍ଡାର !

x x x x

ଆଚ୍ଛା ପିଲାମାନେ ! ମୁଁ କାହା କଥା କହୁଛି, ତୁମେମାନେ କିଛି ଜାଣିପାରୁଛ କି....? ତଥାପି ବି ଜାଣି ପାରୁନାହଁ.....? ସେଦିନ ଆମ ଘରକୁ ଆସିଥିବା ସେ ବିଶିଷ୍ଟ ଅତିଥିଜଣଙ୍କ ହେଉଛନ୍ତି ମିଃ ସଂସାର (Mr. Sansar) ପରା -- ଆମ ତମ ସମସ୍ତଙ୍କର ଅତି ଆଦରର ମାସିକ ଶିଶୁ-କିଶୋର ପତ୍ରିକା 'ସଂସାର'।

ପତ୍ରିକାର ପ୍ରତିଷ୍ଠାତା ହେଉଛନ୍ତି ଓଡ଼ିଶାର ପୁରୁଣା ଦିନର ଜଣେ ବିଶିଷ୍ଟ ଶିକ୍ଷାବିତ୍ ତଥା ବରେଣ୍ୟ ସାହିତ୍ୟିକ ସ୍ୱର୍ଗତ ରାମକୃଷ୍ଣ ନନ୍ଦ। ତମେମାନେ ତମ ସ୍କୁଲ ଆରମ୍ଭ ବେଳେ -- 'ଆହେ ଦୟାମୟ ବିଶ୍ୱବିହାରୀ.....' ଯେଉଁ ପ୍ରାର୍ଥନାଟି ପ୍ରତ୍ୟହ ବୋଲିଥାଅ, ଏଇଟି ତାଙ୍କରି ଦ୍ୱାରା ରଚିତ ହୋଇଛି।

ଏହି ପତ୍ରକାଟି ୬୨ ବର୍ଷ ତଳେ ଆରମ୍ଭ ହୋଇଥିଲା। ଏବେ ଏହାକୁ ୬୩ ବର୍ଷ ଚାଲୁଛି। ଆହୁରି ବିଶେଷ କଥା ହେଉଛି, ଏଇଟି ପ୍ରତି ମାସ ପହିଲା ତାରିଖରେ ପ୍ରକାଶ ପାଇ ଆସୁଛି। ଏତେ ଦୀର୍ଘ ଦିନ ଧରି ଗୋଟିଏ ଶିଶୁ-କିଶୋର ପତ୍ରିକାକୁ ଓଡ଼ିଶା ଭଳି ଏକ ରାଜ୍ୟରେ ବଞ୍ଚାଇ ରଖିବା କମ୍ ସାଧନାର କଥା ନୁହେଁ। ସଂସାର ବର୍ତ୍ତମାନ ଶିଶୁ-କିଶୋରମାନଙ୍କର ଜ୍ଞାନ ବୃଦ୍ଧି କରିବାରେ ଏକ ପ୍ରମୁଖ ଭୂମିକା ତୁଲାଇ ଆସୁଛି। ଏହି ବର୍ଗର ପାଠକପାଠିକାମାନଙ୍କ ଜ୍ଞାନ ବୃଦ୍ଧି କରିବା ପାଇଁ ଓଡ଼ିଶାରେ ଯେଉଁ ଆନ୍ଦୋଳନ ଆରମ୍ଭ ହୋଇଛି, ସଂସାର ସେହି ଆନ୍ଦୋଳନର ପୁରୋଭାଗରେ ରହି ଆସିଛି।

ଏହାର ସମ୍ପାଦନା ଦାୟିତ୍ୱରେ ଅଛନ୍ତି ଓଡ଼ିଶାର ଜଣେ ସ୍ୱନାମଧନ୍ୟ ସାହିତ୍ୟିକା ଶ୍ରୀମତୀ ଅନସୂୟା ନନ୍ଦ। ତେବେ ସଂସାର ପତ୍ରିକାଟିକୁ ବଞ୍ଚାଇ ରଖିବା ପାଇଁ ସ୍ୱର୍ଗତ ରାମକୃଷ୍ଣ ନନ୍ଦଙ୍କ ପୂରା ପରିବାର ଅଣ୍ଟା ଭିଡ଼ି ଦେଇଛନ୍ତି। ସେମାନେ ତାଙ୍କ ପ୍ରତି ଏହା ଏକ ବିରାଟ ସାରସ୍ୱତ ଆହ୍ୱାନ ବୋଲି ବିଚାର କରୁଛନ୍ତି।

ଆଚ୍ଛା, ତମେମାନେ ସଂସାର ଭଳି ଜଣେ 'ବିଶିଷ୍ଟ ଅତିଥି'ଙ୍କୁ ତମ ଘରକୁ ନିମନ୍ତ୍ରଣ କରିବା କ'ଣ ଉଚିତ ନୁହେଁ.....? ?




*ମଣ୍ଡାସାହି,*
*ଜଗତସିଂହପୁର-*
*୭୫୪୧୧୪*

**



# ମୁଁ ଭୁଲ୍ କରିନି ଲୋ ମାଆ

ଶ୍ରୀ ଶ୍ରୀନିବାସ ପାଣି

ମୁଁ ଭୁଲ୍ କରିନି ଲୋ ମାଆ
ତୁ ରାଗ ଗରଗର କିଆଁ ।
ଜେଜୀମାଆଙ୍କର ବିଛଣା ଉଠେଇ
ପାଣି ଦାନ୍ତକାଠି ଦେଉଛି ଖଞ୍ଜେଇ
ହାତ ଧରି ତାଙ୍କୁ ପାଇଖାନା ନିଏ
ଘଷାମଜା କରି ଗାଧୋଇ ବି ଦିଏ
ଆସନ ପକାଇ ବାଢ଼ିଦେଲେ ହାତେ
ଖାଆନ୍ତି ସେ ଜଳଖିଆ
ମୁଁ ଭୁଲ୍ କରିନି ଲୋ ମାଆ ।
ସକାଳେ ଟିକିଏ ବସାଇ ବାହାରେ
ପାଠ ପଢ଼ିବାକୁ ଧାଇଁଆସେ ଘରେ
ପୁଣି ସେ ଡାକିଲେ ବେଗେ ଧାଏଁ ପାଶେ
ଯାହା ସେ କହନ୍ତି ପାଳଇ ହରଷେ
ସ୍କୁଲ ଗଲେ ମୁହିଁ ବାଟ ଥା'ନ୍ତି ଚାହିଁ
କରିବାକୁ ଖିଆପିଆ
ମୁଁ ଭୁଲ୍ କରିନି ଲୋ ମାଆ ।
ରାତି ପାଠପଢ଼ା ଶେଷ ହେବା ପରେ
ଖାଇ ପିଇ ଶୁଏ ତାଙ୍କରି କୋଳରେ
ହାତ ମାରିଦେଲେ ତାଙ୍କରି ପାଦରେ
ଆଉଁସି ଦିଅନ୍ତି ସେନେହ ଆଦରେ
ପ୍ରତିଦିନ ସିଏ କେତେ ପରକାରେ
କାହାଣୀ ଶୁଣାନ୍ତି ନୂଆ
ମୁଁ ଭୁଲ୍ କରୁନି ଲୋ ମାଆ ।
ସେହିମାନେ ପରା ଦେବୀ ବରାଭୟା
ବୟସ ଭାରରେ ନିଃସ୍ୱ ନିସହାୟା
ନ କରିବା ତାଙ୍କୁ ଜମା ଅଣଦେଖା
ଧର୍ମହାନି ହେବ ଏକଥା ଜାଣିଥା'
ମନ ଭରି ତାଙ୍କ ସେବା କରୁଥିଲେ
ଫୁଟେ ମଣିଷପଣିଆ
ମୁଁ ଭୁଲ୍ କରୁନି ଲୋ ମାଆ ।

*କନ୍ତକାଇ, କଳାପଥର, କଟକ- ୭୫୪୦୦୯* **

---



* ଜେଜେବାପା (ନାତିକୁ)-- ଶୀଘ୍ର ଲୁଚିଯା'! ଶିକ୍ଷକ ଆସୁଛନ୍ତି ତୁ ଆଜି ସ୍କୁଲକୁ ଯାଇନୁ ବୋଲି କହିବା ପାଇଁ ।

ନାତି-- ତୁମେ ଲୁଚି ଯା! ମୁଁ ତାଙ୍କୁ କହିଥିଲି, ତମେ ଚାଲିଗଲ ବୋଲି !

x x x

* ଭଉଣୀ (ଭାଇକୁ)- ଆଜି ଜେଜେମା'ଙ୍କର ଜନ୍ମଦିନ ପାଇଁ ତୁ କ'ଣ ଉପହାର ଦେବୁ ?

ଭାଇ-- ଫୁଟ୍‌ବଲ୍ ।

ଭଉଣୀ-- ଫୁଟ୍‌ବଲ୍ କ'ଣ ପାଇଁ ଦେବୁ ? ଜେଜେମା' କ'ଣ ଫୁଟ୍‌ବଲ୍ ଖେଳିବେ ?

ଭାଇ-- ମୋ ଜନ୍ମଦିନରେ ସେ ମତେ କେମିତି ଭଗବତ୍ ଗୀତା ଦେଇଥିଲେ ? ସେଟା ମୁଁ କ'ଣ କରିବି ?



# ଓଜୋନ ସଂରକ୍ଷଣ

ଡାକ୍ତର ଶାନ୍ତି କାନୁନ୍‌ଗୋ

ସେପ୍‌ଟେମ୍ବର ମାସର ୧୬ ତାରିଖକୁ ବିଶ୍ୱ ଓଜୋନ୍ ସଂରକ୍ଷଣ ଦିବସ ରୂପେ ପାଳନ କରାଯାଏ । ତାର ସଂରକ୍ଷଣ ପାଇଁ ବିଶ୍ୱର ଅନେକ ଦେଶ ଚେଷ୍ଟା କରୁଛନ୍ତି । ସଚେତନତା ସୃଷ୍ଟି କରିବା ପାଇଁ ଚେଷ୍ଟା କରାଯାଉଛି । ସେ ବିଷୟରେ କିଛି ଆଲୋକପାତ କରିବା ପାଇଁ ଏହି ଆଲେଖ୍ୟର ଉପସ୍ଥାପନା ।

ସୂର୍ଯ୍ୟକିରଣରୁ ରକ୍ଷା ପାଇବା ପାଇଁ ମନୁଷ୍ୟ ଛତା ବ୍ୟବହାର କରେ । ସୂର୍ଯ୍ୟକିରଣର ଅଲଟ୍ରାଭାଓଲେଟ୍ ରଶ୍ମି ଅଛି, ଯାହା ପୃଥିବୀର ଜୀବଜଗତ ଓ ଉଦ୍ଭିଦ ଜଗତ ପାଇଁ ଅତ୍ୟନ୍ତ କ୍ଷତିକାରକ । ଓଜୋନର ଆସ୍ତରଣ (Layers) ବାୟୁମଣ୍ଡଳରେ ରହି ଛତାସଦୃଶ ସୂର୍ଯ୍ୟର ମାରାତ୍ମକ ଅଲଟ୍ରାଭାଓଲେଟ୍ ରଶ୍ମିଠାରୁ ପୃଥିବୀକୁ ରକ୍ଷା କରୁଛି । ବୈଜ୍ଞାନିକମାନେ ଲକ୍ଷ୍ୟ କରିଛନ୍ତି, ବିଗତ ତିନି ଦଶନ୍ଧି ଧରି ଏହାର ଆସ୍ତରଣ କ୍ଷୟପ୍ରାପ୍ତ ବା ସଂକୁଚିତ ହେଉଛି । ବିଶେଷ କରି ଆଣ୍ଟାର୍କଟିକା ଅଞ୍ଚଳରେ ସ୍ଥାନେ ସ୍ଥାନେ ଏହି ଆସ୍ତରଣରେ ଗର୍ତ୍ତ ସୃଷ୍ଟି ହୋଇଛି । ସେଇଥିପାଇଁ ଏହାର ସଂରକ୍ଷଣ ପାଇଁ ଚେଷ୍ଟା କରାଯାଇଛି । ଓଜୋନ୍ ଅମ୍ଳଜାନ ପରି ଏକ ପ୍ରାକୃତିକ ଗ୍ୟାସ୍ । ଏହାର ରଙ୍ଗ ଈଷତ୍ ନୀଳ । ଅମ୍ଳଜାନରେ ଦୁଇଟି ଆଟମ୍ ଥିବାବେଳେ ଏଥିରେ ୩ଟି ଆଟମ୍ ଥାଏ । ଏହା ପ୍ରାକୃତିକ ଉପାୟରେ ବାୟୁମଣ୍ଡଳରେ ଥାଏ । ଓଜୋନ୍ ଆସ୍ତରଣ କ୍ଷୟହେବାର କାରଣ ପୃଥିବୀରେ ଗଢ଼ିଉଠୁଥିବା କଳକାରଖାନାରେ ଅଗ୍ରଗତି । ବୈଜ୍ଞାନିକମାନେ ଅନୁସଂଧାନରୁ ଜାଣିସାରିଛନ୍ତି ଯେ କ୍ଲୋରୋଫ୍ଲୁରୋକାର୍ବନ ପରି ରାସାୟନିକ ପଦାର୍ଥ ଓଜୋନ୍ ଆସ୍ତରଣକୁ ନଷ୍ଟ କରେ । ଏହି ରାସାୟନିକ ପଦାର୍ଥ ସବୁ ବହୁତ ପରିମାଣରେ ଉନ୍ନତ ଦେଶସମୂହରେ ତଥା ଆମେରିକା, ୟୁରୋପିୟାନ ଦେଶରେ କଳକାରଖାନାରୁ ନିର୍ଗତ ହୋଇଥାଏ ।

ଓଜୋନ୍ ଆସ୍ତରଣ ନଷ୍ଟ ହେବାଦ୍ୱାରା କି କି ପ୍ରକାର କ୍ଷତି ହୋଇପାରେ --

* ସୂର୍ଯ୍ୟକିରଣରେ ଥିବା ଅଲଟ୍ରାଭାଓଲେଟ୍ ରଶ୍ମି ବିନା ବାଧାରେ ପୃଥିବୀରେ ପହଞ୍ଚିପାରେ ।
* ଏହା ବହୁତ ପ୍ରକାର ରୋଗ ସୃଷ୍ଟି କରେ । ସେଗୁଡ଼ିକ ମଧ୍ୟରେ ବିଭିନ୍ନ ପ୍ରକାର ଚର୍ମରୋଗ, ଚର୍ମ କ୍ୟାନ୍‌ସର ସୃଷ୍ଟି ହୁଏ ।
* ଶ୍ୱାସରୋଗ ବହୁ ପରିମାଣରେ ବଢ଼ିଯାଏ, ବଢୁଛି ମଧ୍ୟ ।
* ମ୍ୟାଲେରିଆ ବ୍ୟାପିଯିବାର ସମ୍ଭାବନା
* ଚକ୍ଷୁ ପରଳଜନିତ ରୋଗ ମଧ୍ୟ ବହୁ ପରିମାଣରେ ଦେଖାଦେଲାଣି ।
* ଅନେକ ପ୍ରକାର ସଂକ୍ରାମକ ରୋଗ ମଧ୍ୟ ବଢ଼ି ବଢ଼ି ଚାଲିଛି ।

ଏହାର ଅଭାବରେ କେବଳ ମନୁଷ୍ୟ ନୁହେଁ, ଜୀବଜଗତ, ଉଦ୍ଭିଦ ଜଗତ ମଧ୍ୟ ନଷ୍ଟ ହୋଇଯିବ । ଏହି

ଓଜୋନ ଆସ୍ତରଣରେ ଗର୍ତ୍ତ

ଆସ୍ତରଣର ସଂରକ୍ଷଣ କରା ନ ଗଲେ କାଳକ୍ରମେ ଆମ ପୃଥିବୀରୁ ଜୀବଜଗତ ଲୋପ ପାଇବ। ପୃଥିବୀ ବୃକ୍ଷଲତାହୀନ ମରୁଭୂମିରେ ପରିଣତ ହେବ। ପ୍ରଥମେ ୧୯୮୫ରେ ଭିଏନାରେ ୨୮ଟି ଦେଶର ବୈଜ୍ଞାନିକ ଏକତ୍ର ହୋଇ ଏକ ରାଜିନାମାରେ ସ୍ୱାକ୍ଷର କରିଥିଲେ। ପରେ ୧୯୮୭ରେ ବିଶ୍ୱର ୧୮୦ଟି ଦେଶ ଓଜୋନ ଆସ୍ତରଣକୁ ରକ୍ଷାକରିବା ପାଇଁ ଏକ ରାଜିନାମା ପ୍ରସ୍ତୁତ କରିଥିଲେ। ଏହାକୁ ମଣ୍ଟ୍ରିଲ୍ ପ୍ରୋଟୋକଲ୍ (Montreal Protocol) ବୋଲି ନାମିତ କରାଗଲା। ଏହାର ପ୍ରଧାନ ଉଦ୍ଦେଶ୍ୟ ହେଲା, ଯାହାଦ୍ୱାରା ଏହି ଆସ୍ତରଣ କ୍ଷତିଗ୍ରସ୍ତ ହେଉଛି-- ସେ ସବୁ ତିଆରି ଯଥାସମ୍ଭବ ବନ୍ଦ କରିବା ଓ ତାର ବ୍ୟବହାର କମାଇବା। ଏହି ରାଜିନାମାକୁ ଯଦି ସବୁ ଦେଶ ମାନି କାର୍ଯ୍ୟ କରନ୍ତି, ତା' ହେଲେ ଏହି ଆସ୍ତରଣ ପୂର୍ବାବସ୍ଥାକୁ ଫେରିବାକୁ ୫୦ ବର୍ଷ ଲାଗିବ। ଏହିସବୁ ଯୋଗୁଁ ସାରା ବିଶ୍ୱରେ ସଚେତନତା ସୃଷ୍ଟି ପାଇଁ ସେପ୍ଟେମ୍ବର ମାସର ୧୬ ତାରିଖକୁ ବିଶ୍ୱ ଓଜୋନ ଆସ୍ତରଣ ସଂରକ୍ଷଣ ଦିବସ ବୋଲି ଘୋଷଣା କରାଯାଇଛି।

ଆମକୁ କ'ଣ କରିବାକୁ ହେବ--

* ଯାତାୟାତ କରିବା ପାଇଁ କାର୍ ବ୍ୟବହାର କମାଇବା ଉଚିତ। ସେଥିପାଇଁ ବସ୍, ସାଇକେଲ୍ ବ୍ୟବହାର କରାଯାଇପାରେ। ଅଳ୍ପ ଦୂରତା ପାଇଁ ଚାଲିକରି ଯିବା ଉଚିତ। ଘରେ ବ୍ୟବହାର କରୁଥିବା ରାସାୟନିକ ପଦାର୍ଥର ବ୍ୟବହାର କମାଇବା ପାଇଁ ଚେଷ୍ଟା କରିବା ଉଚିତ। ରେଫ୍ରିଜରେଟର, A.Cରୁ ବହୁତ ପରିମାଣରେ ରାସାୟନିକ ପଦାର୍ଥ ବାହାରିଥାଏ।
* ନିଜ ଘରେ ଓ ଘର ପାର୍ଶ୍ୱରେ ଗଛ ଲଗାନ୍ତୁ।
* ଏ ବିଷୟରେ ଜନସଚେତନତା ପାଇଁ ଅନ୍ୟମାନଙ୍କୁ କହନ୍ତୁ।
* ସ୍କୁଲରେ ସ୍କୁଲ ପିଲାମାନଙ୍କୁ ଏ ସବୁ ବିଷୟରେ ଜାଣିବାକୁ ଦିଅନ୍ତୁ। ଏପରି କଲେ ଆମେ ଆମର ଏଇ ସୁନ୍ଦର ପୃଥିବୀକୁ ମରୁଭୂମିରେ ପରିଣତ ହେବାରୁ ରକ୍ଷା କରିପାରିବା।

*ବାଙ୍କିସାହି, କଟକ- ୭୫୩୦୦୯*

**

ଏଭଳି ବିପଜ୍ଜନକ ରେଳଯାତ୍ରା ପାଇଁ କିଏ ଦାୟୀ ?
ସରକାର ନା **ଜନସାଧାରଣ** ?

# ଧଳା ଠେକୁଆର ସମୁଦ୍ର ଅତିକ୍ରମ

ଡ. ପ୍ରଭାତୀ ମିଶ୍ର

ଜାପାନ ଦେଶ ଚାରୋଟି ଦ୍ୱୀପକୁ ନେଇ ଗଠିତ। ଏହି ଦ୍ୱୀପମାନ ଜାପାନ ସମୁଦ୍ର, ଚୀନ ସମୁଦ୍ର ଓ ପ୍ରଶାନ୍ତ ମହାସାଗର ଦ୍ୱାରା ବେଷ୍ଟିତ ହୋଇଥାଆନ୍ତି। ଜାପାନ ସମୁଦ୍ର କୂଳରେ ଥିବା ଏକ ଦ୍ୱୀପରେ ଧଳା ରଂଗର ଠେକୁଆଟିଏ ରହୁଥିଲା। ସେହି ଦ୍ୱୀପଟି ଫୁଲ, ଫଳ, ଗଛ, ପତ୍ରରେ ଭରା ହୋଇ ସମୁଦ୍ର ମଧ୍ୟରେ ଏକ ସୁନ୍ଦର ସ୍ଥଳଭାଗ ଥିଲା; କିନ୍ତୁ ଏଠାରେ ଠେକୁଆର ମନ ସନ୍ତୁଷ୍ଟ ନ ଥିଲା। କାରଣ ତାର ଏଠାରେ କେହି ସାଂଗ ନ ଥିଲେ।

ସେ ବିରାଟ ଜଳପୂର୍ଣ୍ଣ ସମୁଦ୍ର ଦେଖି କୂଳରେ ଠିଆ ହୋଇ ଭାବୁଥାଏ-- ଏହି ପାଣି ଆରପଟେ କିପରି ସ୍ଥଳ ଭାଗ ଅଛି। ତାର ଦେଖିବାକୁ ବହୁତ ମନ ହେଉଥାଏ। ସେପଟେ ପାହାଡ଼ ଅଛି କି ଉଦ୍ୟାନ ଅଛି, ତା'ର ଖାଦ୍ୟ କୋବି, ଗାଜର, ବିଟ୍ ଆଦି ସେଠାରେ ମିଳିବ କି ନାହିଁ, ସେଠାରେ ଜନବସତି ଅଛି କି ନାହିଁ, ବିଶେଷ କରି ତାର ସାଙ୍ଗ ଠେକୁଆମାନେ ଅଛନ୍ତି କି ନାହିଁ-- ଏହିସବୁ ଚିନ୍ତା ତାକୁ ସଦାସର୍ବଦା ଘାରିଥାଏ। ଏତେ ବଡ଼ ସମୁଦ୍ରକୁ ତ ସେ ପହଁରି ପାର ହୋଇପାରିବନି କି ନାଉରିଆ ତାର ଡଙ୍ଗାରେ ସମୁଦ୍ରରେ ଯାଉଥିବା ସେ କେବେ ଦେଖିନାହିଁ। ସମୁଦ୍ରର ଢେଉଢେଉକା ପାଣି କୂଳ ଆଡ଼କୁ ମାଡ଼ି ଆସୁଥିବା ଦେଖି ସେ ଶଙ୍କାକୁଳ ଥିଲା। କିନ୍ତୁ ଠେକୁଆ ପ୍ରତିଦିନ ସୁଯୋଗ ଖୋଜୁଥାଏ, କିପରି ସେ ସମୁଦ୍ର ଆରପଟ ଦ୍ୱୀପକୁ ଯିବ ଏବଂ ଏକ ନୂତନ ଦୁନିଆ ଦେଖିବ।

ଦିନେ ଏପରି କୂଳରେ ବୁଲୁ ବୁଲୁ ଠେକୁଆ ମୁଣ୍ଡରେ ଏକ ବୁଦ୍ଧି ଜୁଟିଲା। ସେ ସମୁଦ୍ରରେ ଥିବା ସାର୍କ ମାଛ ସହିତ ବନ୍ଧୁତା କଲା। ସାର୍କ ମାଛ ମଧ୍ୟ ଖୁସିରେ ଠେକୁଆକୁ ସାଙ୍ଗ କଲା। ଠେକୁଆ ସାର୍କକୁ ପଚାରିଲା, "କାହାର ସବୁଠାରୁ ବେଶୀ ସାଙ୍ଗ ଅଛନ୍ତି ?" ସାର୍କ କହିଲା, "ମୋର ବହୁତ ସାଂଗ ଅଛନ୍ତି।" ଠେକୁଆ ତତ୍‌କ୍ଷଣାତ୍ ଚାଲାକି କରି କହିଲା, "କାହିଁ, ତମ ବନ୍ଧୁମାନଙ୍କୁ ମୋତେ ଦେଖାଇପାରିବ ?" ସାର୍କ କହିଲା, "ହଁ, ସମୁଦ୍ରରେ ମୋର ସାଥୀ ସାର୍କ କେତେ ଅଛନ୍ତି, ମୁଁ ପାଣିକୁ ଗଲେ ତୁମକୁ ମୋ ସାଂଗମାନଙ୍କୁ ଦେଖାଇବି।" ଠେକୁଆ କହିଲା, "ତମର କେତେ ସାଂଗ ଅଛନ୍ତି, ମୁଁ ତାଙ୍କ ସଂଖ୍ୟା ଗଣିବାକୁ ଚାହେଁ।"

ସଂଗେ ସଂଗେ ସାର୍କ ମାଛ ତାର ସାଂଗମାନଙ୍କୁ ଡାକି ଏକ ଧାଡ଼ିରେ ରଖିଲା। ଠେକୁଆ କୂଳରୁ ପାଣି ଉପରେ ଭାସୁଥିବା ସାର୍କ ମାଛମାନଙ୍କ ପିଠି ଉପରେ ଉଠିଲା। ସେ ଖୁସିରେ ଗୋଟିଏ ସାର୍କର ପିଠି ଉପରୁ ଡେଇଁକି ଆଉ ଗୋଟିଏ ସାର୍କର ପିଠି ଉପରକୁ ଚଢୁଥାଏ। ତାର କି ଆନନ୍ଦ ! ସେ ପାଟିକରି ସାର୍କମାଛମାନଙ୍କ ସଂଖ୍ୟା ଗଣି ଚାଲିଥାଏ-- ଏକ, ଦୁଇ, ତିନି, ଚାରି-- ଏହିପରି ଯାଉ ଯାଉ ଠେକୁଆକୁ ସମୁଦ୍ରର ଆରପଟର ସ୍ଥଳଭୂମି ଦେଖାଗଲା। ଶେଷ ସାର୍କ ମାଛର ପିଠି ଉପରୁ ଡେଇଁ ପଡ଼ିବାବେଳେ ସେ ପାଟି କରି ହସିଲା ଓ ସମସ୍ତଙ୍କୁ କହିଲା, "ହେ ସାର୍କମାଛମାନେ, ତମେମାନେ କେଡ଼େ ବୋକା, ମୋ ପାଇଁ ସମୁଦ୍ରରେ ଏକ ଲମ୍ବା ବନ୍ଧଟେ ତିଆରି କରିଦେଲ ! ମୁଁ କେମିତି ଚାଲାକି କରି ତମମାନଙ୍କ ପିଠି ଉପରେ ଚଢ଼ି ଏତେ ବଡ଼ ସମୁଦ୍ରକୁ ଅତିକ୍ରମ କରି ଏପଟ ସ୍ଥଳଭାଗକୁ ଚାଲିଆସିଲି ଦେଖିଲ ତ ?"



ମାଛମାନେ ରାଗିଗଲେ । ସେମାନେ ଉପାୟ ଖୋଜିଲେ କିପରି ଏ ଠକ ଠେକୁଆକୁ ଉଚିତ ଶାସ୍ତି ଦେବେ । ଏକ ସାର୍କ ମାଛ ହଠାତ୍ ଠେକୁଆର ଲୋମକୁ ତା ମୁନିଆ ଦାନ୍ତରେ ଟାଣି ଛିଣ୍ଡାଇଦେଲା । ଠେକୁଆ "ଆଃ, ଆଃ, କାଟୁଛି !" କହି କାନ୍ଦିବାକୁ ଲାଗିଲା । ସେ ବହୁତ କୁତ୍ସିତ ଦିଶିଲା । ସେହି ସମୟରେ ସେ ଦେଶର ରାଜା ସେହି ବାଟ ଦେଇ ଯାଉଥିଲେ । ସେ ଠେକୁଆର କଷ୍ଟ ଦେଖି ତାର କାରଣ କ'ଣ ତାକୁ ପଚାରିଲେ । ଠେକୁଆ ସବୁ ଘଟଣା ବର୍ଣ୍ଣନା କଲା । ଶେଷରେ ସେ ମାନିଲା ଯେ ମିଛ କହିବାରୁ ସାର୍କ ମାଛମାନେ ତାକୁ ଏପରି ଆଘାତ ଦେଇଛନ୍ତି ।

ରାଜା ସବୁ କଥା ଶୁଣି କହିଲେ, "ମୁଁ ତମକୁ ସାହାଯ୍ୟ କରିପାରିବି, ଯଦି ତମେ ମୋ କଥା ମାନିବ ।" ଠେକୁଆ କହିଲା, "ହଁ ଆଜ୍ଞା, ଆପଣ ଯାହା କହିବେ, ମୁଁ ତାହା କରିବି ।" ରାଜା କହିଲେ, "ଦେଖ ଠେକୁଆ, ତମେ ମିଛ କହିଲ ଓ ସାଂଗମାନଙ୍କୁ ଠକାଇଲ, ତେଣୁ ଏପରି ଦଣ୍ଡ ପାଇଲ । ଏବେ ମୁଁ ଏକ ଉପାୟ ବତାଉଛି, ତମେ ମାନି ଚଳିଲେ ପୁନର୍ବାର ତୁମ ପୂର୍ବ ଲୋମ ଓ ସୌନ୍ଦର୍ଯ୍ୟ ଲାଭ କରିବ ।"

ଠେକୁଆ ସମ୍ମତି ଦେଲା । ରାଜା ତାକୁ ପ୍ରଥମେ ସମୁଦ୍ର ପାଣିରେ ବୁଡ଼ି ଆସିବାକୁ କହିଲେ । ସେ ସମୁଦ୍ରରେ ସ୍ନାନ କରି ଆସିବାରୁ ତାକୁ ଘାସର ତିଆରି ଏକ ବସା ଦେଖାଇଲେ ଓ କହିଲେ-- ତମକୁ ଏହି ଘାସ ଶେଯରେ ରାତି ସାରା ଶୋଇବାକୁ ହେବ । ତେବେ ସକାଳକୁ ତମ ଲୋମ ଉଠି ଆସିଥିବ ।"

ରାଜାଙ୍କ କଥା ମାନି ଠେକୁଆ ସେହି ବଡ଼ ବଡ଼ ଘାସର ଶେଯରେ ରାତିରେ ଶୋଇଲା । ସକାଳ ହେବାରୁ ସେ ତା' ଦେହକୁ ଆଗ ଚାହିଁଲା । ଦେଖିଲା ସତକୁ ସତ ତାର ଛିଣ୍ଡି ଯାଇଥିବା ଲୋମ ସବୁ ପୁଣି ଗଜୁରିକି ଦେହରେ ଲାଗିଯାଇଛି । ସେ ଖୁସିରେ ନାଚି ନାଚି ରାଜାଙ୍କ ପାଖକୁ ଗଲା ଓ ତାର ଲୋମ ଉଠି ଯାଇଥିବାରୁ ସେ ରାଜାଙ୍କ ନିକଟରେ କୃତଜ୍ଞତା ପ୍ରକାଶ କଲା । ସେହିଦିନଠାରୁ ଧଳା ଠେକୁଆ ପ୍ରତିଜ୍ଞା କଲା ଯେ ସେ କେବେ କାହାରିକୁ ଠକାଇବ ନାହିଁ, କାରଣ ଯେ ଅନ୍ୟକୁ ଠକାଏ, ସେ ନିଜେ ଠକାମିର ଶିକାର ହୁଏ ।

(ଜାପାନର ଲୋକକଥା)

*୬୪୯, ମହାନଦୀ ବିହାର, 'ପ୍ରଣବାଳୟ', କଟକ- ୭୫୩୦୦୪*

ପୃଥିବୀରେ ଥିବା ପେଟ୍ରୋଲର ଶତକଡ଼ା ୨୯ ଭାଗ ଏବଂ ପୃଥିବୀରେ ଉତ୍ପାଦିତ ହେଉଥିବା ବିଦ୍ୟୁତ୍‌ରୁ ଶତକଡ଼ା ୩୩ ଭାଗ ଆମେରିକା ବ୍ୟବହାର କରେ ।

# ପାର୍ବଣ ପସରା ମେଲି

ଶ୍ରୀ ଦାମୋଦର ବେହେରା

ଏଇ ଦଶ'ରା ମେଲି ପସରା
ଦେଖ ନାଚି ନାଚି ଆଇଲାଣି
ଧରଣୀରାଣୀ ଆନନ୍ଦ ମନେ
ପାରବଣ ଗୀତ ଗାଇଲାଣି ।
ଧଳା ଆକାଶେ ଶରତ ଜହ୍ନ
ମୁଖ ସଫା କରି ଚାହିଁଲାଣି
ନଈ ପଠାରେ ଚଅଁର ଛାଡ଼ି
କାଶତଣ୍ଡୀ ସଜ ହୋଇଲାଣି ।
ଆମରି ଶିଳ୍ପୀ ଚକଟି ମାଟି
ମା'ର ମୂରତି ଗଢ଼ିଲେଣି
ଦଶଭୁଜାଙ୍କୁ କରିଣ ସଜ
ପୂଜା ବେଦିରେ ଥୋଇଲେଣି ।
ନୂଆ ଚାନ୍ଦୁଆ ହେଲାଣି ଟଙ୍ଗା
ତୋରଣ ବନ୍ଧା ସରିଲାଣି
ହେଲେଣି ସଜ କଇଁ ମୁରୁଜ
ଘରକୁ କୁଣିଆ ଆଇଲେଣି ।



ବଡ଼ ପରବ ଦଶ'ରା ଯାତ
ପିଲାଏ ଛୁଟି ପାଇଲେଣି
କାହାର ମନେ କେତେ ସପନ
ମନ ଖୋଲିଣ କହିଲେଣି ।
ମଣିଷ ଦେହେ ମହିଷ ଜ୍ୱାଳା
ଦେବୀ ବିନାଶ କରିବାକୁ
ବରଷେ ଥରେ ଆସନ୍ତି ମା'
ଏଇ ଆମରି ମରତକୁ ।

*ଯୁଣଭଦ୍ରା କଲେଜ, ବିତନା, ପ୍ରୀତିପୁର, ଯାଜପୁର- ୭୫୫୦୧୩*

## ଶରତ ଆଗମେ

ଶ୍ରୀ ଅଶୋକ କୁମାର ନାୟକ

ଶ୍ରାବଣୀ ଲୁହରେ ଧରାକୁ ଭିଜାଇ ବରଷା ଯାଉଛି ଫେରି
କାଶତଣ୍ଡୀ ହସେ ରସାଇ ରସାକୁ ଶରତ ଆସିଛି ଧରି
ଧଳା ବଉଦର ଭରା ବୋଇତରେ ଖୁସିର ପସରା କେତେ
ଜାତି ଜାତି ଫୁଲେ ଚାଙ୍ଗୁଡ଼ା ସଜାଇ ମାଆର ଶୁଭ ସ୍ୱାଗତେ ।

କଅଁଳ କାକର ପୂତନୀର ସିଞ୍ଚି ପବିତ୍ର କଲାଣି ଧରା
ତର୍ପଣ ଦାନେ ନଟିନୀ-ତଟିନୀ ହେଲାଣି ଦର୍ପଣ ନୀରା
ସାରସ-ମରାଳ ଯୁଗଳ ବିଳାସେ ପ୍ରସାରି କୁମୁଦ ହାସ
ମଧୁର-ମୋଦରେ ଛୁଟାଇ ଦେଇଛି ଫୁଟନ୍ତା ଫୁଲର ବାସ ।

ଲୁଟି ମକରନ୍ଦ ସାନନ୍ଦେ ମିଳିନ୍ଦ ମାଳାଏ ଗୁଞ୍ଜନ ରଚି
ମଧୁର ମଙ୍ଗଳ ଅଷ୍ଟକ ଗାନେ କି ଧରାକୁ କରନ୍ତି ଶୁଚି
ରୁଚିର ରୁଚିରେ ଝୋଟିଚିତା ରଚି 'ମାଆ'ର ଅର୍ଚ୍ଚନା ଇଚ୍ଛି
ମୋ ମାଆ ହାତର କାଛଅଙ୍କା ଛବି ଆଜି କିନ୍ତୁ ଖାଲି ସ୍ମୃତି ।

ପସରା ମେଲାଇ ତଥାପି ଦଶ'ରା ଦାଣ୍ଡରେ ହେଲାଣି ଠିଆ
ମାଆର ଅର୍ଚ୍ଚନେ କାହିଁକି କେଜାଣି ଉଲୁସି ଉଠୁଛି ହିଆ ।

*ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ, ବାଲେଶ୍ୱର-୭୫୬୦୦୧* ✲✲

# ବୁଦ୍ଧିର ଯାଦୁବାଡ଼ି

ଶ୍ରୀ ନଗେନ୍ଦ୍ର ନାଥ ପଟ୍ଟନାୟକ

ଗୁଡ଼ିଆ ନାମରେ କୁନି ଝିଅଟିଏ, ଭାରି ଗେହ୍ଲା । ଦିନେ ସେ ଶୋଇଥିବା ବେଳେ ଗୋଟିଏ ସୁନ୍ଦର ସ୍ୱପ୍ନ ଦେଖିଲା । ସ୍ୱପ୍ନରେ ସେ ଯାଇ ନିଜ ଘର ଛାତ ଉପରେ ପହଂଚିଗଲା । ସେଠି ସେ ଦେଖିଲା ଯେ ଧରିତ୍ରୀ ମା' କୋଳରେ ସରଗ ରାଇଜରୁ ରଂଗ ବେରଂଗର ଫୁଲସବୁ ମୁକ୍ତା ଭଳି ଖସିପଡୁଛି । ଆକାଶରେ ରାତିର ତାରାମାନେ ଚିକ୍‌ମିକ୍ କରି ଝଲସି ଉଠୁଛନ୍ତି । ତା' ମୁହଁକୁ ଚାହିଁ ଖିଲି ଖିଲି ହୋଇ ହସୁଛନ୍ତି। ପୁଣି ତା' ଆଡକୁ ଭାସି ଆସୁଥିବାର ଏକ ଉଡ଼ନ୍ତା ଥାଳିଆ ମଧ୍ୟ ତା' ଆଖିରେ ପଡିଲା ।

ସେଇ ଉଡ଼ନ୍ତା ଥାଳିଆ ଉପରେ ଜଣେ ସୁନ୍ଦର ସୁନ୍ଦର ଡେଣାଥିବା ପରୀକୁ ବି ଦେଖିଲା । ଅପରୂପା ପରୀ ଗୁଡ଼ିଆକୁ ନିଜ ପାଖକୁ ଡାକିଲା । ନିଜ କୋଳରେ ବସାଇ ସେଇ ଉଡନ୍ତା ଥାଳିଆରେ ସାରା ଆକାଶ ବୁଲାଇଲା । ତାକୁ ନେଇ ଜହ୍ନମାମୁ ସହିତ ବି ଭେଟ କରାଇଲା । ତାକୁ ବହୁତ ଖେଳନା ବି ଦେଲା । ଗୁଡ଼ିଆ ନଭମଣ୍ଡଳରେ ଚମତ୍କାର ମନଲୋଭା ଦୃଶ୍ୟସବୁ ଦେଖିଲା । ପରୀ ତା' ନିଜ କୁହୁକ ବାଡ଼ିଟିକୁ ବୁଲାଇଲା । ଦେଖୁ ଦେଖୁ ପରୀ ସ୍ୱର୍ଗଲୋକରେ ପହଂଚିଗଲା । ସୁନ୍ଦର ସୁନ୍ଦର ଡେଣାଥିବା ପରୀମାନଙ୍କୁ ଦେଖି ଗୁଡ଼ିଆ ଚକିତ ହୋଇଗଲା ଆଉ ମନେ ମନେ ଭାବିବାକୁ ଲାଗିଲା– ଆହା, ସିଏ ଯଦି ଏମିତି ଏକ ପରୀ ହୋଇଯାଆନ୍ତା, ତେବେ କେଡ଼େ ମଜା ହୁଅନ୍ତା !

ଗୁଡ଼ିଆର କଥାକୁ ପରୀ ଚଟାପଟ ବୁଝିନେଲା ଏବଂ ତାକୁ ବୁଝାଇ କହିଲା- ''ଦେଖ, ତୁମେ ବି ଏହି ଭୂଲୋକରେ ଏକ ପରୀ । ତୁମ ପାଖରେ ଅଦ୍ଭୁତ ଶକ୍ତି ଅଛି –ତା ହେଉଛି ତୁମର ବୁଦ୍ଧି । ତୁମେ ନିଜ ବୁଦ୍ଧିଦ୍ୱାରା ଜୀବନର ସବୁ କାମ ସମ୍ଭବ କରିପାରିବ । ଆମେ ସ୍ୱର୍ଗର ଅପସରା ବା ପରୀ ହେଲେ ବି ଆମ ମନରେ ତ ଇଚ୍ଛା ଅଛି, ଆମେ ମଧ୍ୟ ତୁମ ପରି ମାଆଙ୍କ ସ୍ନେହ ଚାହୁଁ । ଆମ ମନ କହୁଛି, ଆମ ବାପା ଆମ ପାଇଁ ସୁନ୍ଦର ଉପହାର ଆଣି ଦିଅନ୍ତୁ; କିନ୍ତୁ ଏସବୁ ତ ତୁମକୁ ମିଳିପାରୁଛି । ଏବେ ତୁମେ ଧରିତ୍ରୀ ମା' କୋଳକୁ ଫେରିଯାଅ । ନିଜର ବୁଦ୍ଧି ବଳରେ ପ୍ରତ୍ୟେକ କାମ କର । ଫଳରେ ତୁମେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସଫଳତା ପାଇପାରିବ । ତୁମ ପାଖରେ ବୁଦ୍ଧିରୂପୀ ଯାଦୁର ବାଡ଼ି ରହିଛି ।''

ଗୁଡ଼ିଆ ପରୀର ସବୁ କଥାକୁ ବୁଝିଗଲା ଆଉ ମନେ ମନେ ହସିବାକୁ ଲାଗିଲେ । ଏଣେ କୁନି ଗୁଡ଼ିଆର ମା ତାକୁ ଡାକିଲା । ମା'ଙ୍କର ପାଟି ଶୁଣି ତା' ନିଦ ଚାଉଁକିନା ଭାଙ୍ଗିଗଲା । ଆଖି ଖୋଲି ଦେଖିଲା, ତା' ମାଆ ସାମନାରେ ଠିଆହୋଇଛି । ତା' ପରେ ସେ ଆଖିକୁ ମଳି ମଳି ସପନରେ ଦେଖିଥିବା ସବୁକଥା ତା ମା' ଆଗରେ ବଖାଣିଲା । ମା' ମଧ୍ୟ ଗୁଡିଆକୁ ନିଜର କୁନିପରୀ ବୋଲି କହିଲେ । ଗେଲକରି ତାକୁ କୋଳେଇନେଲେ ।

ପିଲାମାନେ, ଏହି କାହାଣୀ ତୁମମାନଙ୍କୁ ବୁଝାଇ ଦେଉଛି ଯେ ତୁମ ପାଖରେ ବୁଦ୍ଧିର ବଳ ଅଛି । ଏହା ହେଉଛି ତୁମର ଯାଦୁର ବାଡ଼ି । ଯାହାଦ୍ୱାରା ତୁମେ ସବୁ ସଫଳତା ହାସଲ କରିପାରିବ ।

*ଜିଲ୍ଲା କୋଷାଗାର ଅଧିକାରୀ, ପୁରୀ*



ଶ୍ରୀ ସୁରେଶ କୁମାର ପଣ୍ଡା

## ⁂ ଅପରିଗ୍ରହ

ପ୍ରାୟ ସତୁରି ବର୍ଷ ତଳର କଥା । ପବିତ୍ର ଗଙ୍ଗା ନଦୀ ତଟରେ ଅବସ୍ଥିତ ବୁନ୍ଦଲ ସହରରେ ଶ୍ରୀସାଙ୍ଗଦେବ ବିଦ୍ୟାଳୟ ସ୍ଥାପନ କରାଯାଇଥାଏ । ଦେଶର କୋଣଅନୁକୋଣରୁ ଶହ ଶହ ସଂଖ୍ୟାରେ ଛାତ୍ର ଆସି ସେଠାରେ ସଂସ୍କୃତ ଅଧ୍ୟୟନ କରୁଥାଆନ୍ତି ।

ସେଠାକାର କୁଳପତି ଥାଆନ୍ତି ବିଦ୍ୱାନ 'ଜୀବନଦତ୍ତ' । ସିଏ ପାଖରେ ଏକ କୁଟୀର ନିର୍ମାଣ କରି ରହୁଥାଆନ୍ତି । ତାଙ୍କର ଜୀବନ ଥିଲା ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର । ନିଜର ଆବଶ୍ୟକତାକୁ ଦୃଷ୍ଟିରେ ରଖି ସାମାନ୍ୟ କିଛି ଅର୍ଥ ବିଦ୍ୟାଳୟ ତରଫରୁ ସେ ଗ୍ରହଣ କରୁଥିଲେ ।

ଜଣେ ରୋଷେୟା ତାଙ୍କ ପାଇଁ ରୋଷେଇ କରି ଦେଉଥାଏ । ଦିନେ ସିଏ ଆସି କହିଲା-- ଲୁଣ ଯେତିକି ଅଛି, ସେଥିରେ ଆଜି ଚଳିଯିବ । କାଲି ପାଇଁ କିଛି ନାହିଁ ।

ତା'ପରଦିନ ଭୋଜନ କରୁଥିବା ସମୟରେ ଡାଲମାରେ ତାଙ୍କୁ ଲୁଣର ସ୍ୱାଦ ଅନୁଭୂତ ହେଲା । ଜୀବନଦତ୍ତ ରୋଷେୟାକୁ ପଚାରିଲେ-- ଆଜି କ'ଣ ତୁମେ ବଜାର ଯାଇଥିଲ ?

''ନାଇଁ ଆଜ୍ଞା । ଦୁଇଦିନ ଧରି କାର୍ଯ୍ୟବ୍ୟସ୍ତତା ମଧ୍ୟରେ ବଜାର ଯିବାକୁ ସମୟ ପାଇନାହିଁ ।'' ରୋଷେୟା କହିଲା ।

''ତା'ହେଲେ ଲୁଣ କେଉଁଠୁ ଆଣିଲ ?''

''ଆଜି ଛାତ୍ରାବାସର ଭୋଜନାଳୟରୁ କିଛି ଲୁଣ ଆଣି କାମ ଚଳେଇଦେଲି ।''

ଶୁଣୁଶୁଣୁ 'ଜୀବନଦତ୍ତ' ଖାଇବା ସ୍ଥାନରୁ ଉଠି ପଡ଼ିଲେ । କହିଲେ-- ''ଆଜି ପର୍ଯ୍ୟନ୍ତ ମୁଁ ଯେଉଁ ନିଷ୍ଠା ପାଳନ କରି ଆସିଥିଲି, ଆଜି ତୁମଯୋଗୁଁ ମୋତେ ସେଥିରୁ ବିଚ୍ୟୁତ ହେବାକୁ ପଡ଼ିଲା । ତୁମେ ଶିଘ୍ର ଯାଇ ବଜାରରୁ ଦୁଇ ପଇସାର ଲୁଣ ଆଣି ଛାତ୍ରାବାସରେ ଦେଇଆସ ।''

## ⁂ ଆପଣ ଝଡ଼ ଯେଉଁଠାରୁ ଆଣିବେ



ଇଂଲଣ୍ଡରେ ନୌସେନା ଅଧିକାରୀ ଚୟନ ନିମନ୍ତେ ପ୍ରାର୍ଥୀମାନଙ୍କ ସାକ୍ଷାତକାର ଚାଲିଥାଏ । ମାଉଣ୍ଟବେଟନ୍ ନାମରେ ଜଣେ ଯୁବକ ମଧ୍ୟ ପ୍ରାର୍ଥୀ ଥିଲେ । ତାଙ୍କୁ ପ୍ରଶ୍ନ କରାଗଲା--

ସମୁଦ୍ରରେ ଯଦି ଅଚାନକ ତୋଫାନ ଆସେ, ତା'ହେଲେ କ'ଣ କରିବ ?

''ମୁଁ ଲଙ୍ଗର ଟାଣିବାକୁ ଆଦେଶ ଦେବି ।'' ମାଉଣ୍ଟବେଟନ୍ ଉତ୍ତରଦେଲେ ।

''ଆଉଥରେ ତା'ଠାରୁ ଯଦି ଏକ ବଡ଼ ତୋଫାନ ଆସେ ?''

''ପୁଣି ଏକ ଲଙ୍ଗର ଟାଣିବି ।'' ମାଉଣ୍ଟବେଟନ୍ କହିଲେ ।

ଏହି ପ୍ରଶ୍ନର ବାରମ୍ବାର ପୁନରାବୃତ୍ତି କରିବା ପରେ ସାକ୍ଷାତକାର ନେଉଥିବା ଅଧିକାରୀ ସ୍ମିତହାସ୍ୟ କରି

କହିଲେ, "ଯୁବକ ! ତୁମେ ଏତେସବୁ ଲଙ୍ଗର ଆଣିବ କେଉଁଠୁ ?"

"ଆପଣ ଏତେ ଝଡ଼ ଯେଉଁ ସ୍ଥାନରୁ ଆଣିବେ।" ନିର୍ଭୀକ ଭାବରେ ଉତ୍ତରଦେଲେ ମାଉଣ୍ଟବେଟନ୍।

ଯୁବକଙ୍କୁ ନୌସେନା ଅଧିକାରୀ ଭାବରେ ନିଯୁକ୍ତି ମିଳିଲା । ସେଇ ଯୁବକଜଣକ ପରବର୍ତ୍ତୀ ସମୟରେ ଭାରତର ବଡ଼ଲାଟ୍ ଭାବରେ ନିଯୁକ୍ତି ପାଇଥିଲେ। ତାଙ୍କ ନାଁ ଥିଲା 'ଲର୍ଡ୍ ମାଉଣ୍ଟବେଟନ୍'।

## ❊❊ ମୋର ନୁହେଁ, ଈଶ୍ୱରଙ୍କ ଗୁଣଗାନ କର

'ଅହଲ୍ୟାବାଈ ହୋଲକର' ନିଜର ଦାନଶୀଳତା ତଥା ପରୋପକାର ଗୁଣ ନିମନ୍ତେ ଅତ୍ୟନ୍ତ ପ୍ରସିଦ୍ଧ ଥିଲେ । ରାଜ୍ୟର ଜଣେ ବିଦ୍ୱାନ କବି ତାଙ୍କର ଏଇସବୁ ଗୁଣକୁ ନେଇ ଏକ ମହାକାବ୍ୟ ରଚନା କଲେ। ଏଥିରେ ରାଣୀଙ୍କ ଦ୍ୱାରା କରାଯାଇଥିବା ସମସ୍ତ କାର୍ଯ୍ୟର ବର୍ଣ୍ଣନା ଥାଏ।

ରାଜଦରବାରରେ ପହଞ୍ଚି କବି ରାଣୀଙ୍କ ସମ୍ମୁଖରେ କାବ୍ୟର କିଛି ପଂକ୍ତି ପଢ଼ି ଶୁଣାଇଲେ। କବିଙ୍କର ପାଣ୍ଡିତ୍ୟ ଦେଖି ସେଠାରେ ଉପସ୍ଥିତ ସମସ୍ତେ ମନ୍ତ୍ରମୁଗ୍ଧ ହୋଇଉଠିଲେ। କବି ଏଥର ରାଣୀଙ୍କ ମୁଖକୁ ଚାହିଁଲେ।

"ପଣ୍ଡିତ ମହାଶୟ ! ଆପଣ ଯେଉଁ କାବ୍ୟ ରଚନା କରିଛନ୍ତି, ତାହା ଅତ୍ୟନ୍ତ ମନୋମୁଗ୍ଧକର; କିନ୍ତୁ ମୁଁ ଜଣେ ସାଧାରଣ ମହିଳା। ରାଣୀ ହିସାବରେ ପ୍ରଜାଙ୍କର ସେବା କରିବା ମୋର ଏକମାତ୍ର ଧର୍ମ। ସେଇ ସାମାନ୍ୟ କାର୍ଯ୍ୟ କରି ମୁଁ କିଛି ଅଧିକା କରିନାହିଁ। ଯଦି ଆପଣ ମୋ ପରିବର୍ତ୍ତେ ଈଶ୍ୱରଙ୍କ ଗୁଣଗାନ କରିଥା'ନ୍ତେ, ତା'ହେଲେ ଲୋକମାନେ ଆହୁରି ଉପକୃତ ହୁଅନ୍ତେ। ଏହାଫଳରେ ଆପଣଙ୍କ ଯଶବୃଦ୍ଧି ହେବା ସହିତ ପାଠକମାନଙ୍କଠାରେ ଈଶ୍ୱରପ୍ରେମ ଜାଗ୍ରତ ହୁଅନ୍ତା; କିନ୍ତୁ ଆପଣ ଏତେ ପରିଶ୍ରମ କରି ଗ୍ରନ୍ଥଟି ରଚନା କରିଛନ୍ତି ଯେତେବେଳେ, ତାହାର ଫଳ ଅବଶ୍ୟ ମିଳିବ।" ଏହା କହି ରାଣୀ ସ୍ୱର୍ଣ୍ଣମୁଦ୍ରାପୂର୍ଣ୍ଣ ଏକ ଥଳି କବିଙ୍କୁ ଉପହାର ଦେଲେ।

କବି ଚାଲିଯିବା ପରେ ରାଣୀ ମନ୍ତ୍ରୀଙ୍କୁ ଡାକି ଆଦେଶ ଦେଲେ, କାବ୍ୟଗ୍ରନ୍ଥଟିକୁ ନେଇ ନର୍ମଦା ନଦୀର ଜଳରେ ପ୍ରବାହିତ କରିଦେବାକୁ। ରାଣୀଙ୍କ ମହନୀୟତା ଦେଖି ପ୍ରଧାନମନ୍ତ୍ରୀଙ୍କ ମସ୍ତକ ନତ ହୋଇଗଲା।

*ଗୁମୁଡ଼ା, ବି.ସିଂହପୁର, କୋରାପୁଟ-୭୬୪୦୫୭* ❋❋

---

ଜାଣନ୍ତି କି ?

- ବୁଦ୍ଧିମାନ ଲୋକଙ୍କର ବାଳରେ ଅଧିକ ଜିଙ୍କ୍ ଓ ରୂପା ରହିଥାଏ।
- ଧୂମକେତୁର ଲାଞ୍ଜ ସୂର୍ଯ୍ୟଙ୍କ ବିପରୀତ ଦିଗରେ ଲମ୍ବିଯାଏ।
- ସ୍ୱାଇନ୍ ଫ୍ଲୁର ଟିକା ପ୍ରଥମେ ୧୯୭୬ ମସିହାରେ ଆବିଷ୍କୃତ ହୋଇଥିଲା ଓ ଏହି ଟିକା ନେଇ ସେତେବେଳେ ଯେତିକି ଲୋକ ମୃତ୍ୟୁମୁଖରେ ପଡ଼ିଲେ, ସେତିକି ଲୋକ ରୋଗରେ ମଧ୍ୟ ମୃତ୍ୟୁବରଣ କରି ନ ଥିଲେ।
- ପୂର୍ବ କାଳରେ ଅପରିଚିତ ଲୋକଟିର ହାତରେ ଅସ୍ତ୍ରଶସ୍ତ୍ର ନାହିଁ, ଏହା ଦେଖାଇବାକୁ ଯାଇ କର-ମର୍ଦ୍ଦନ କରାଯାଉଥିଲା । ଏବେ ସେହି ପ୍ରଥା ଅଭିବାଦନରେ ମଧ୍ୟ ବ୍ୟବହୃତ ହୋଇ ଚାଲିଛି।

# କୁମ୍ଭୀର କାନ୍ଦଣା

ଶ୍ରୀମତୀ ମୀନା କୁମାରୀ ନନ୍ଦ

ଚାରିଆଡ଼େ ଖରାର ତାତି । ତା' ସାଙ୍ଗକୁ ନିର୍ବାଚନ ପାଇଁ ଜୋରସୋର ପ୍ରସ୍ତୁତି ସହିତ ଚାରିଆଡ଼େ ପ୍ରଚାରର ସରଗରମ ।

ସୂର୍ଯ୍ୟ ପଶ୍ଚିମାକାଶରେ ଅସ୍ତଗାମୀ । ଛାତ ଉପରେ ତେଜା ତାର ପୁତୁରା ଗୁଲୁ ସହିତ ବୁଲୁଥାଏ । ରାସ୍ତା ଦେଇ କେଉଁ ଗୋଟିଏ ଦଳର ନିର୍ବାଚନ ପ୍ରଚାର ଗାଡ଼ିଟେ ପ୍ରଚାର କରି କରି ଯାଉଥାଏ-- "ଜନତାଙ୍କ ପାଇଁ ନେତାଙ୍କର କୁମ୍ଭୀର କାନ୍ଦଣା !"

ଗୁଲୁ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ ପଚାରିଲା-- "କକେଇ, ସତରେ କ'ଣ କୁମ୍ଭୀର କାନ୍ଦେ ?"

ତେଜା ପଚାରିଲା-- "ଗୁଲୁ, ତୁ କେବେ କୁମ୍ଭୀର ଦେଖିଛୁ ?" ଗୁଲୁ କହିଲା-- "ହଁ, ଆମେ ନନ୍ଦନକାନନ ବୁଲିବାକୁ ଯାଇଥିଲୁ । ସେଠାରେ ମୁଁ କୁମ୍ଭୀର ଦେଖିଛି । କିନ୍ତୁ ତାର କାନ୍ଦ ଶୁଣିପାରିଲିନି ତ !"

ତେଜା କହିଲା-- "ଆଚ୍ଛା, ତୁ କୁମ୍ଭୀର ବିଷୟରେ କିଛି ଜାଣିଛୁ ?" ଗୁଲୁ କିଛି ସମୟ ପରେ କହିଲା-- "ଏହା ଗୋଟିଏ ବହୁତ ବଡ଼ ଝିଟିପିଟି ପରି ଦେଖାଯାଉଥିଲା ।"

ତେଜା ତାର କଥା ଶୁଣି ହସିଦେଇ କହିଲା-- ହଁ, ତୋର କଥା କିଛି ଅଂଶରେ ସତ । ଯେପରି ଲୋକ କହନ୍ତି-- "ବାଘ ନ ଦେଖିଲେ ବିଲେଇ ଦେଖ ।"

ସେହିପରି କୁମ୍ଭୀର ନ ଦେଖିଲେ ଝିଟିପିଟି ଦେଖ । ହଉ, ମୁଁ କୁମ୍ଭୀର ବିଷୟରେ କିଛି କହୁଛି ଶୁଣ--

କୁମ୍ଭୀର ହେଉଛି ସରୀସୃପ ଜାତୀୟ । ଏହାର ବିକଳ୍ପ ପ୍ରାୟ ଝିଟିପିଟି ଓ ଗୋଧି ଅଟନ୍ତି । ଏମାନେ ଏସିଆ, ଆଫ୍ରିକା, ଅଷ୍ଟ୍ରେଲିଆ ଏବଂ ଆମେରିକା ଆଦିରେ ଦେଖାଯା'ନ୍ତି । ମଧୁର ଓ ଲବଣାକ୍ତ ଜଳରେ ଏମାନେ ବାସ କରନ୍ତି ।

ଆମେରିକା ଓ ଚୀନ୍ ଦେଶର ଲବଣାକ୍ତ ଜଳରେ ଯଥା-- ହ୍ରଦ, ସମୁଦ୍ରରେ ବାସ କରୁଥିବା କୁମ୍ଭୀରର ଆକୃତି ମଧୁର ଜଳରେ ବାସ କରୁଥିବା କୁମ୍ଭୀରଠାରୁ ବୃହଦାକାର, ଯାହାକୁ ଆଲିଗେଟର (Alligator) କୁହାଯାଏ । ଏହାର ଲମ୍ବ ଚଉଦ ଫୁଟରୁ କୋଡ଼ିଏ ଫୁଟ୍ ପର୍ଯ୍ୟନ୍ତ ଅଟେ ।



crocodile



alligator

ମଧୁର ଜଳର କୁମ୍ଭୀରମାନେ ନଦୀ, ପୋଖରୀ, ନାଳ ଓ ଯୋଡ଼ମାନଙ୍କରେ ବାସ କରନ୍ତି । ଏମାନେ ୧.୮ ମିଟରରୁ ୩ ମିଟର ପର୍ଯ୍ୟନ୍ତ ଲମ୍ବ । କୁମ୍ଭୀରମାନେ ଉଭୟଚର ପ୍ରାଣୀ । ସେମାନେ ସୂର୍ଯ୍ୟକିରଣ ଗ୍ରହଣ କରନ୍ତି ସ୍ଥଳଭାଗରେ ଏବଂ ପଡ଼ି ରହିଥାନ୍ତି କାଠଗଡ଼ ପରି; କିନ୍ତୁ ବେଶୀ ସମୟ ପାଣିରେ ରହନ୍ତି । ଶିକାର କରନ୍ତି ପାଣିରେ ଏବଂ ଖାଇଥା'ନ୍ତି ମଧ୍ୟ ପାଣିରେ । ଅଣ୍ଡା ଦିଅନ୍ତି ସ୍ଥଳଭାଗରେ । ଜଳରେ ଏମାନଙ୍କର ବହୁତ ବଳ ଥାଏ ।

ଶରୀରର ତାପମାତ୍ରା କମ୍ । କୁମ୍ଭୀରମାନେ ମାଂସାଶୀ। ଏହି କୁମ୍ଭୀରମାନଙ୍କୁ 'ନଦୀର ରାଜା', 'ଲିଜାର୍ଡ ଅଫ୍ ଦି ରିଭର' (Lizard of the River) କୁହାଯାଏ। ଏମାନେ ପାଞ୍ଚପ୍ରକାର ଦେଖାଯାନ୍ତି। ଯଥା- ୧) ଗୁହୁମୁହାଁ ବା ଗୋ'ମୁହାଁ, ୨) ଥଣ୍ଟିଆ ବା ମାଛୁଆ, ଘଡ଼ିଆଳ ବା ଦାଢ଼ିଆଣୀ, ୪) କୁଜି ଓ ୫) ଶଙ୍ଖୁଆ ବା ଧଳା କୁମ୍ଭୀର। ଏହିପରି ପାଞ୍ଚପ୍ରକାର କୁମ୍ଭୀର ଦେଖାଯାଆନ୍ତି।

କୁମ୍ଭୀର ପିଠି ଅତ୍ୟନ୍ତ ଶକ୍ତ, ଆବଡ଼ାଖାବଡ଼ା, ଟାଣ ଓ ଶକ୍ତ। ଲାଞ୍ଜ ଲମ୍ବା, ତୀକ୍ଷ୍ଣ ଓ କଣ୍ଟାଯୁକ୍ତ । ଶରୀର ତଳ ଅଂଶ ନରମ। ଥୋମଣି ଲମ୍ବା ଓ ଅଣଓସାରିଆ। ଏହାର ପାଟି ଖୁବ୍ ବଡ଼ ଓ ଦାନ୍ତ ଅତ୍ୟନ୍ତ ତୀକ୍ଷ୍ଣ ହୋଇଥିବାରୁ ସେ ପାଟି ଓ ଦାନ୍ତ ସାହାଯ୍ୟରେ ଶିକାର କରିଥାଏ। ଏହାର ଜିଭ ଛୋଟ ଓ ପାଟିର ନିମ୍ନ ଦେଶରେ ଦୃଢ଼ ଭାବରେ ଲାଗି ରହିଥାଏ। ତେଣୁ ଏହା କେବଳ ପାଟିରେ ପାଣିର ଯାତାୟାତକୁ କବାଟୀ (Valve) ପରି ନିୟନ୍ତ୍ରଣ କରିଥାଏ। ଏମାନଙ୍କର ଝାଳବୁହା ଗ୍ରନ୍ଥି ନ ଥାଏ। ଶୋଇଲାବେଳେ କୁକୁର ପରି ପାଟି ଖୋଲି ଧକେଇ ଧକେଇ ଶୋଇଥାନ୍ତି। ଗୋଡ଼ ଏମାନଙ୍କର ଛୋଟ। କୁମ୍ଭୀରମାନଙ୍କର ଆଖି, କାନ, ନାକ, ପୁଡ଼ିଆଗୁଡ଼ିକ ମୁଣ୍ଡର ଅତି ନିକଟରେ ଅବସ୍ଥିତ। ଯେତେବେଳେ ଏମାନେ ପାଣି ଉପରେ ଭାସନ୍ତି, ସେତେବେଳେ ଏହି ଅଂଶଗୁଡ଼ିକର ଯେଉଁ କବାଟୀ (Valve) ଥାଏ, ତାହା ପାଣି ନ ପଶିବା ପାଇଁ ବନ୍ଦ କରି ରଖିବାରେ ସାହାଯ୍ୟ କରେ । ସ୍ଥଳଭାଗରେ ଘୁଷୁରି ଘୁଷୁରି ଏମାନେ ଚାଲନ୍ତି।

ମାଇ କୁମ୍ଭୀର କୋଡ଼ିଏଟିରୁ ଷାଠିଏଟି ପର୍ଯ୍ୟନ୍ତ ଅଣ୍ଡାଦିଏ। ପୁରୁଷ କୁମ୍ଭୀରମାନେ ଅଣ୍ଡାକୁ ଜଗିଥାନ୍ତି। ମେ ମାସରୁ ଜୁଲାଇ ମାସ ପର୍ଯ୍ୟନ୍ତ ଦୀର୍ଘ ତିନିମାସ ପ୍ରଜନନର ସମୟ। ଏହି ସମୟରେ କୁମ୍ଭୀରମାନେ ଅତ୍ୟଧିକ ହିଂସ୍ର ହୋଇ ଉଠୁଥିବାବେଳେ ପକ୍ଷୀ, ପଶୁ, ଗୋରୁ ଓ ମନୁଷ୍ୟ ଆଦି ପାଖକୁ ଆସିଲେ ସେମାନେ ତୀକ୍ଷ୍ଣ ଦାନ୍ତ ସାହାଯ୍ୟରେ ଆକ୍ରମଣ କରି ଧରି ନେଇଥାନ୍ତି। ଏମାନେ ମଧ୍ୟ ପକ୍ଷୀ, ଛୋଟ ଛୋଟ ପଶୁ, ମାଛ, କଇଁଚ, ଗେଣ୍ଡା ଆଦି ଜଳଚର ପ୍ରାଣୀଙ୍କୁ ଖାଇଥାନ୍ତି। କୁମ୍ଭୀରମାନେ ଶହେ ବର୍ଷରୁ ଶହେ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି।

ଗୁଲୁ କହିଲା-- କକେଇ, ତୁମେ କୁମ୍ଭୀର ବିଷୟରେ ଜାଣିବା କଥା କହିଲ। ଏବେ ତା'ର କାନ୍ଦ ବିଷୟରେ କୁହ।

ଗୁଲୁର କଥା ଶୁଣି ତେଜା କହିଲା-- ହଁ ତୋତେ କୁମ୍ଭୀର ବିଷୟରେ ମୋଟାମୋଟି କିଛି କହିଲି, ଏବେ ତାର 'କାନ୍ଦ' ବିଷୟରେ ଶୁଣ--

କୁମ୍ଭୀର ହେଉଛି ଜୀବଜଗତର ଏକମାତ୍ର ସରୀସୃପ ଜାତୀୟ ପଶୁ, ଯାହାର ଆଖିରୁ ଖାଇଲାବେଳେ ଲୁହ ଝରିଥାଏ। କୁମ୍ଭୀର ତା'ର ଖାଦ୍ୟକୁ ଉପରକୁ ପକାଇ ପାଟି ସାହାଯ୍ୟରେ ସେଇ ଖାଦ୍ୟକୁ ଧରି ଖାଇଥାଏ।

କୁମ୍ଭୀରର ଲୁହଗ୍ରନ୍ଥି ଲାକ୍ରିମାଲ ଗ୍ଲାଣ୍ଡ ମନୁଷ୍ୟର ଲୁହ ଗ୍ରନ୍ଥି ସହ ସମାନ ଏବଂ ଏହି ଗ୍ରନ୍ଥିଗୁଡ଼ିକରୁ ଏକପ୍ରକାର ତରଳ ପଦାର୍ଥ ନିର୍ଗତ ହୁଏ, ଯାହା ମନୁଷ୍ୟର ଲୁହ ସହିତ ସମାନ। କିନ୍ତୁ କୁମ୍ଭୀରର ଲୁହଗ୍ରନ୍ଥି ପ୍ରବାହିକା ନଳୀବିହୀନ ଅଟେ। କୁମ୍ଭୀରର ଲୁହଗ୍ରନ୍ଥିର ପ୍ରଧାନ କାର୍ଯ୍ୟ ହେଉଛି ତାର ଆଖିକୁ ଓଦା ରଖିବା।

ଏହି ଲୁହଗ୍ରନ୍ଥି ତଣ୍ଟିର ଅତି ନିକଟରେ ଅବସ୍ଥିତ। ଯେତେବେଳେ କୁମ୍ଭୀର ଖାଦ୍ୟ ଗିଳିବା ପାଇଁ ଚାପ ପ୍ରୟୋଗ କରେ, ସେତେବେଳେ ଚାପ ଦ୍ୱାରା ଏହି ଗ୍ରନ୍ଥିମାନଙ୍କରୁ ତରଳ ପଦାର୍ଥ ଆଖିରୁ ନିଗର୍ତ ହୋଇଥାଏ। ଫଳରେ ଏହା ଲୁହ ବୋହିବାର ଧାରଣା ସୃଷ୍ଟି କରିଥାଏ।

ଆହୁରି ମଧ୍ୟ କୁମ୍ଭୀର ପଶୁମାନଙ୍କୁ ଆକ୍ରମଣ କରିବା ସମୟରେ ପଶୁମାନେ ତା'ଠାରୁ ରକ୍ଷା ପାଇବା ପାଇଁ ଗର୍ଜନ କରି ଲଢ଼େଇ କରିଥା'ନ୍ତି। ଏହି ସମୟରେ ପାଟି ବାଟେ କିଛି କିଛି ବାୟୁ ଠେଲି ହୋଇ ତଣ୍ଟିରୁ ଆଖି ନିକଟକୁ ଥିବା ପଥ ସାଇନସେସ୍ (Sinuses) ମଧ୍ୟ ଦେଇ ଲୁହ ଗ୍ରନ୍ଥିରେ ପ୍ରବେଶ କରେ। ଫଳରେ ତରଳ ପଦାର୍ଥ ଲୁହ ପରି ବୋହିଥାଏ ଓ ସେଥିରୁ କିଛି ଲୁହ ପାଟିବାଟେ ପାଚକ ରସରେ ମିଶି ଖାଦ୍ୟ ଖାଇବାରେ ସାହାଯ୍ୟ କରେ। ବାହାରକୁ ବୋହି ଆସିଥିବା ତରଳ ପଦାର୍ଥ ଲୁହ ବୋହିବାର ଧାରଣା ମନରେ ସୃଷ୍ଟି କରେ। କିନ୍ତୁ ସେ ଲୁହ ପ୍ରକୃତ କାନ୍ଦର ଲୁହ ନୁହେଁ।

ସବୁ ଶୁଣିସାରି ଗୁଲୁ କହିଲା-- କକେଇ, ମୁଁ ଭାବିଲି- କୁମ୍ଭୀର ପକ୍ଷୀ, ପଶୁ ଓ ମନୁଷ୍ୟମାନଙ୍କୁ ଅତି କ୍ରୂର ଭାବରେ ମାରି ଖାଉଥିବାରୁ ତାର ଭୁଲ କାମ ପାଇଁ ଅନୁତାପ କରି କାନ୍ଦୁଥିବ। ତେଜା କହିଲା-- ନାଇଁରେ ଏସବୁ ତାର ମିଛ କାନ୍ଦର ଲୁହ।

*ଅରୁଣୋଦୟ ନଗର, କଟକ* **




ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

୧। ପ୍ରାଚୀନ କାଳରେ କେଉଁ ସାଗରକୁ 'ରତ୍ନାକର' ବୋଲି କୁହାଯାଉଥିଲା ?

୨। ପ୍ରସିଦ୍ଧ ମୁଖୌଟା ନୃତ୍ୟ (Mask Dance) ପାଇଁ କେଉଁ ରାଜ୍ୟ ପ୍ରସିଦ୍ଧ ?

୩। ଗତ ୧୧ ଜାନୁଆରୀ ୨୦୧୪ ତାରିଖରେ ଇସ୍ରାଏଲର କେଉଁ ପ୍ରଧାନମନ୍ତ୍ରୀ ମୃତ୍ୟୁବରଣ କରିଛନ୍ତି ?

୪। କାଟିକଲ୍ ଶଙ୍କରନାରାୟଣନ୍ (Kateekal Shankaranarayan) ବର୍ତ୍ତମାନ କେଉଁ ରାଜ୍ୟର ରାଜ୍ୟପାଳ ଅଛନ୍ତି ?

୫। ଆନ୍ତର୍ଜାତିକ ମାତୃଭାଷା ଦିବସ (International Mother Language Day) କେବେ ପାଳନ କରାଯାଇଥାଏ ?

୬। କେଉଁ ଦେଶ ମୁକ୍ତା ଦ୍ୱୀପ (Island of Pearls) ଭାବରେ ପରିଚିତ ?

୭। କବି ଯଦୁମଣି କେଉଁ ନାମରେ ପ୍ରସିଦ୍ଧ ?

୮। ପୃଥିବୀର ସର୍ବପ୍ରଥମ ମହିଳା ରାଷ୍ଟ୍ରପତି କିଏ ?

୯। ଭାରିଓଲା 'Variola' ରୋଗର ସର୍ବଜନବିଦିତ ନାମଟି କ'ଣ ?

୧୦। ମେହେସାନା (Mehsana) କେଉଁ ରାଜ୍ୟର ଏକ ଜିଲ୍ଲାର ନାମ ?

*ଦୁର୍ଗାପୁର, ତାଳଚେର, ଅନୁଗୁଳ- ୭୫୯୧୦୦* **

(ଉତ୍ତର ୨୯ ପୃଷ୍ଠାରେ)

# ପଖିଆ

ଶ୍ରୀ ବାସୁଦେବ ଥାଟୋଇ

ଡେଙ୍ଗା ସରସର ତାଳଗଛ ତଳୁ କାଟି ଆଣି ତାଳ ପତର
ଶୁଖାଇ ସଜାଇ ଶିଳ୍ପୀ ବୁଣାକାର କରିଦିଏ ତାକୁ ମନ୍ତର ।
ବାହାଙ୍ଗାର କାଠି କୋରଟ ମିଶାଇ ଗଣ୍ଠି ଦେଇ କରେ ସିଲେଇ
କାଛର କଣ୍ଠାରେ ଲମ୍ବା କରି ତାକୁ ସହଜରେ ହୁଏ ଝୁଲେଇ ।

ପକ୍ଷୀ ପରି ତା'ର ଲମ୍ବିଥାଏ ଦେହ ଡଙ୍ଗା ପରି ଖାଲି ପେଟରେ-
ଚାଷୀ ମୂଲିଆର ସୁନା ସମ୍ପଦ ଏ କିଣାବିକା ହୁଏ ହାଟରେ ।
ମୁଣ୍ଡ ଠାରୁ ଇଏ ଆଣ୍ଠୁ ପରିଯନ୍ତେ ମଣିଷକୁ କରେ ରଖିଆ
ଭାରି ଉପକାରୀ ଜିନିଷଟିଏ ଏ' ଦେଖିଛ ନା କେବେ ପଖିଆ ?

ମୁଣ୍ଡରେ ଥୋଇଲେ ଗୋଟାସାରା ଦେହ ଯତନରେ ଦିଏ ଘୋଡ଼େଇ
ହେଉ ଖରା ଅବା ବରଷା କି ଝଡ଼ ପବନ ପାରେନା ଉଡ଼େଇ ।
ସହି ସହି କଷ୍ଟ- କଷଣ ଯେମିତି ଲାଗଇ ମଣିଷ ସେବାରେ
ସୁନ୍ଦର ସୁଲଭ ଗୁଣମାନ ତା'ର ବୁଝି ନ ପାରେ କେ ଅବାରେ !

ଭାରି ଗାଉଁଲି ଏ ଗାଁ'ର ଗୌରବ ବର୍ଷା ଦିନ ପାଇଁ ବଡ଼ିଆ
ଗାଁ'ରେ ଜନମ ଗାଁ'ରେ ସମ୍ମାନ ସହରୀ ଲୋକଙ୍କୁ ଅଡୁଆ ।
ଗାଡୁଆ ପେଟ ତା' ଗଡ଼ାଣିଆ ପିଠି ସହେ ଖରା ଝଡ଼ ବରଷା
ସହିବା ଗୁଣଟା ଅଛି ବୋଲି ତା'ର ମଣିଷକୁ ହୁଏ ଭରସା ।

ଗୁଣ ଯା'ର ଅଛି ମୁଣ୍ଡରେ ବସିବ କିଏ କାଟିବ ଏ ବିଧିକି ?
ନିର୍ଜୀବ ହେଲେ ବି ଉପକାର ତା'ର କରିହୁଏ ଉପଲବ୍ଧି କି ।
ପଖିଆରେ ତୋର ଯେତେ ଭଲ ଗୁଣ ମଣିଷକୁ ଦେ' ଉଧାର
ମନ୍ଦ-ମଣିଷର ଗନ୍ଧ-ବଦଗୁଣ ତୋତେ ଦେଖି ହେଉ ସୁଧାର ।

*ଭାରତୀୟ ଜୀବନ ବୀମା ନିଗମ, ପଟ୍ଟାମୁଣ୍ଡାଇ ଶାଖା, କେନ୍ଦ୍ରାପଡ଼ା*

**

# ମାଲେସିଆ ଯାତ୍ରା-୩

ଡା. ସୁଦର୍ଶନ ପଟ୍ଟନାୟକ

ସେଠାରୁ ଫେରି ଆମେ 'ଲିମ୍ ଗୌଟାଙ୍ଗ୍' ବୌଦ୍ଧମନ୍ଦିର ଦେଖିଲୁ । ମନ୍ଦିରର ନିର୍ମାଣକର୍ତ୍ତା, ଗୌଟାଙ୍ଗଙ୍କ ନାମାନୁସାରେ ଏହା ନାମିତ । ଏହା ଚୀନାମାନଙ୍କର ଏକ କାରୁକାର୍ଯ୍ୟ ଶୋଭିତ ମନ୍ଦିର ।

ଏ ଅଞ୍ଚଳ ଏକ ଉଚ୍ଚ ପାର୍ବତ୍ୟ ଅଞ୍ଚଳ । ଏହି ପାର୍ବତ୍ୟ ନଗରୀରେ ଗୌଟାଙ୍ଗ ଏକ ବିଶାଳ 'ଗୌଟାଙ୍ଗ୍ ଜୟା' ହୋଟେଲ ମଧ୍ୟ ନିର୍ମାଣ କରିଥିଲେ ।

ସମୁଦ୍ର ପତନର ଦୁଇଶହ ଫୁଟ ଉଚ୍ଚରେ ଅନ୍ୟ ଏକ ଗୁମ୍ଫାରେ ମନ୍ଦିର ନିର୍ମାଣ କରାଇଥିଲେ । ତାହାର ନାମ ଥିଲା ଚିଙ୍ଗ୍ ସ୍ୱି ମନ୍ଦିର (Ching Swee Temple) । ସେଠାରୁ ଗୋଟିଏ କିଲୋମିଟର ନିମ୍ନଭାଗରେ ଗୋଟିଏ ହୋଟେଲ ଦେଖିବାକୁ ମିଳେ । କୁହାଯାଏ, ତାହା ହେଉଛି ପୃଥିବୀର ହୋଟେଲ ଶିଳ୍ପର ପ୍ରଥମ ଇମାରତ ।

ପୁନଶ୍ଚ ଆଉ ଗୋଟିଏ କିଲୋମିଟର ତଳେ ଏକ ବିରାଟ 'ଗୌଟାଙ୍ଗ୍ ସମାଧି କକ୍ଷ' ଦେଖିବାକୁ ମିଳେ । ଏହା ସେଇ ମହାନ୍ ଆତ୍ମା ଗୌଟାଙ୍ଗ୍‌ଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିର୍ମିତ ଓ ଜାତି ଉଦ୍ଦେଶ୍ୟରେ ସମର୍ପିତ । ବର୍ତ୍ତମାନ ଏହା ଏକ ପର୍ଯ୍ୟଟନସ୍ଥଳୀରେ ପରିଣତ ହୋଇପାରିଛି ।

ତା'ପରେ ଆମେ କେତେକ ହିନ୍ଦୁ ମନ୍ଦିର ଦେଖିବାକୁ ଗଲୁ । ତା' ଭିତରେ ସ୍ୱାମୀ ମୁରୁଗାନ୍ କାର୍ତ୍ତିକେୟନ୍ ମନ୍ଦିର ଅତ୍ୟନ୍ତ ଆକର୍ଷଣୀୟ ଓ ମୁଖ୍ୟ । ଏହି ମନ୍ଦିରର ଅବସ୍ଥିତି କୁଆଲାଲ୍‌ମପୁରଠାରୁ ପ୍ରାୟ ୧୬ କିଲୋମିଟର ଦୂରରେ ଅବସ୍ଥିତ । ଏହା ପର୍ବତ ମଧ୍ୟରେ



ପ୍ରସ୍ତର ଖୋଦେଇ ଗୁମ୍ଫାରେ ଅବସ୍ଥିତ । ଏହି ମୂର୍ତ୍ତିର ଉଚ୍ଚତା ୧୪୦ ଫୁଟ । କୁହାଯାଏ, ସାରା ବିଶ୍ୱରେ ପ୍ରଭୁ କାର୍ତ୍ତିକେୟନଙ୍କର ଏହି ମୂର୍ତ୍ତି ସବୁଠାରୁ ଉଚ୍ଚତମ ବିଗ୍ରହ । ଏହା ୨୯.୦୧.୨୦୦୬ ମସିହାରେ ସ୍ଥାପିତ ହୋଇଥିଲା ।

ଏହି ମନ୍ଦିରର ପରିସର ବ୍ୟାପ୍ତ ଓ ବିରାଟ । ଏହି ପରିସର ଭିତରେ ଅନ୍ୟ ବହୁଗୁଡ଼ିଏ ମନ୍ଦିର ମଧ୍ୟ ନିର୍ମିତ ହେଇଛି । ତନ୍ମଧ୍ୟରେ ବିଘ୍ନନାଶକ, ଗଣେଶ ମନ୍ଦିର, ସଂକଟମୋଚନ ହନୁମାନ ମନ୍ଦିର ଓ ଶନିଶ୍ଚର ମନ୍ଦିର ଅନ୍ୟତମ ।

ଆମେ ଜାଣୁ, ଶନି ହେଉଛନ୍ତି ସୂର୍ଯ୍ୟଦେବତାଙ୍କ ପୁତ୍ର । ତାଙ୍କର ନିର୍ମିତ ମନ୍ଦିରଟି ରଥ ଆକାରର ଓ ସୂର୍ଯ୍ୟଦେବଙ୍କ ରଥରେ ଥିବା ଛଅଟି ଘୋଡ଼ା ଭଳି ଉକ୍ତ ରଥର ଛଅଟି ଘୋଡ଼ା ରହିଛି । ଏ ସମସ୍ତ ଦେଖିଲାପରେ ସନ୍ଧ୍ୟା ଆଗତ ପ୍ରାୟ ହୋଇଯାଇଥିଲା । ଏଣୁ ଆମେ ହୋଟେଲକୁ ଫେରିଆସିଲୁ । ତା'ପରଦିନ ଆମର କୋଆଲାଲମପୁର ସହର ବୁଲିବାର ଥାଏ ।

ଏହି ନଗରୀର କ୍ଷେତ୍ରଫଳ ପ୍ରାୟ ୨୪୪ ବର୍ଗ କିଲୋମିଟର । ଜନସଂଖ୍ୟା ପାଖାପାଖି ପଚାଶ ଲକ୍ଷ ।

ଏହା ଦୁଇଟି ନଦୀ– କ୍ଲାଙ୍ଗ ଓ ଗୋମ୍ବାକର ସଙ୍ଗମସ୍ଥଳୀରେ ଗଢ଼ିଉଠିଛି । ନିର୍ମାଣ ସମୟରେ ସେ ଅଞ୍ଚଳ ଅତ୍ୟନ୍ତ କର୍ଦ୍ଦମାକ୍ତ ଥିଲା ଓ ନିର୍ମାଣ ପରେ ପୁଣ୍ୟଭୂମିରେ ପରିଣତ ହେଲା ବୋଲି ତାହାର ନାମ କୋଆଲାଲମ୍ପୁର ରଖାଯାଇଛି । ଏହି ନାମଟି ଦୁଇଟି ଶବ୍ଦର ସମ୍ମିଶ୍ରଣରେ ସୃଷ୍ଟି– କୋଆଲାମ୍ ଓ ଲୁମ୍ପୁର । କୋଆଲାମ୍ ଅର୍ଥ ହେଲା– ନଦୀର ସଙ୍ଗମସ୍ଥଳୀ ଓ ଲୁମ୍ପୁର ଶବ୍ଦର ଅର୍ଥ ହେଲା– କର୍ଦ୍ଦମାକ୍ତ(Muddy) । ବର୍ତ୍ତମାନର କଳେବର ଦେଖିଲେ ସ୍ୱପ୍ନରେ ବି ବିଶ୍ୱାସ କରି ହେବନାହିଁ ଯେ ତାହା ଏକ କର୍ଦ୍ଦମାକ୍ତ, ଅପରିଷ୍କାର, ଅବାସୀୟ ସ୍ଥାନ ଥିଲା । ବର୍ତ୍ତମାନ ବୋଧହୁଏ ଏହା ପୃଥିବୀର ସୌନ୍ଦର୍ଯ୍ୟମୟ ନଗରୀ ମଧ୍ୟରେ ଅନ୍ୟତମ ।

କାର୍ଯ୍ୟସୂଚୀ ଅନୁଯାୟୀ ଆମର ପ୍ରଥମ ପରିଦର୍ଶନ ସ୍ଥାନ ନିର୍ଦ୍ଦିଷ୍ଟ ହେଇଥିଲା, 'ଦେବୀମାତା' ମନ୍ଦିର (Temple of Goddess, Mother) । ଏହି ମନ୍ଦିରଟି ଚୀନାମାନଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଥିଲା । ତା'ର ନାମ ସେମାନେ ରଖିଛନ୍ତି ଚେ-ୱା-ହ୍ୱାଓ (CHE-Wa-How) । ଏହି ମନ୍ଦିରକୁ ଦୟାଦେବୀମାତାଙ୍କୁ (Mother of mercy) ସମର୍ପିତ କରାଯାଇଛି ।

ଏହି ମନ୍ଦିରରେ ତିନୋଟି ମୂର୍ତ୍ତି ସ୍ଥାପନା କରାଯାଇଛି । ଗୋଟିଏ ପାର୍ଶ୍ୱରେ ଦେବୀ ଶାନ୍ତି ଓ କ୍ଷମାଦାତା (Mother of peace) ଓ (Forgiveness) ସ୍ଥାନିତ ହୋଇଥିଲାବେଳେ ଅପରପାର୍ଶ୍ୱରେ ଦେବୀ ଜଳମାତା (Mother of waters) ଅର୍ଥାତ୍ ସାଗରସମୂହ ଓ ମହାସାଗରର ଜଳସମୂହର ମାତା । ଏ ଦୁଇମାତାଙ୍କ ମଧ୍ୟରେ ସ୍ଥାପନା କରାଯାଉଛି ମାତା ଦୟାଦେବୀ (Mother of Mercy) ଓ ତାଙ୍କରି ନାମାନୁସାରେ ଏ ମନ୍ଦିରଟି ନାମିତ ହେଇଛି ।

କୁହାଯାଏ, ସେମାନେ ଜଳକୁ ଯଥେଷ୍ଟ ଗୁରୁତ୍ୱ ଦେବା ସହିତ ଏହା ସମସ୍ତ ସମ୍ପଦ ଓ ଐଶ୍ୱର୍ଯ୍ୟର କାରଣ ବୋଲି ଗ୍ରହଣ କରିଛନ୍ତି । କାରଣ ସମୁଦ୍ରରେ ସେମାନେ ନୌବାଣିଜ୍ୟ ଓ ବେପାର କରି ନିଜକୁ ତଥା ଦେଶକୁ ଓ ଜାତିକୁ ସମୃଦ୍ଧ କରିପାରିଥିଲେ ବୋଲି ସେମାନଙ୍କର ବିଶ୍ୱାସ ରହିଥିଲା ତ, ସେଥିପାଇଁ ଦେବୀ ପ୍ରତିକୃତିରେ ପ୍ରାଣବନ୍ତ ମାତା, ମାନବୀ ରୂପରେ ସେଠାରେ ସ୍ଥାପନା କରି ପୂଜାର୍ଚ୍ଚନା କରାଯାଉଛି ।

ଏହି ଅଞ୍ଚଳର ଜଳବାୟୁର ଏକ ବିଶେଷ ବିଶେଷତା ରହିଛି । ତାହା ହେଲା ତା'ର ଉତ୍ତାପ । ବର୍ଷସାରା ଏହାର ଉତ୍ତାପ ପ୍ରାୟ ସମାନ ରହେ । ତାହାପୁଣି ୨୫°ରୁ ୩୩° ସେଲ୍‌ସିୟସ୍ ମଧ୍ୟରେ ରହେ । ଏଠାର ନଦୀମାନଙ୍କରେ ଓ ନାଳମାନଙ୍କରେ କର୍ଦ୍ଦମାକ୍ତ ଜଳ ପ୍ରବାହିତ ହୋଇଥାଏ ।

ମାଲେସିଆ, ଇଣ୍ଡୋନେସିଆ ଓ ବ୍ରୁନେଇର କିଛି କିଛି ଅଞ୍ଚଳକୁ ନେଇ ବୋର୍ଣ୍ଣିଓ ଦ୍ୱୀପ ଗଠିତ । ଏହାପରେ ମାଲେସିଆ କ୍ରାଟ୍‌ଙ୍କ ପ୍ରାସାଦ ଦେଖିବାକୁ ଗଲୁ । ଏହି ଦ୍ୱୀପର ଲୋକସଂଖ୍ୟା ପାଖାପାଖି ପ୍ରାୟ ୩୦ ଲକ୍ଷ ହେବ, ଯେତେବେଳେ କି କେବଳ କୋଆଲା-ଲମପୁରର ଲୋକସଂଖ୍ୟା ପ୍ରାୟ ୫୦ଲକ୍ଷ ।

ସମ୍ରାଟଙ୍କ ପ୍ରାସାଦରେ ଭିନ୍ନ ଭିନ୍ନ ରଙ୍ଗର ପତାକା ଦେଖିବାକୁ ମିଳେ । ସମ୍ରାଟଙ୍କ ଉପସ୍ଥିତି ଓ ଅନୁପସ୍ଥିତି ବିଷୟ ପତାକା ସୂଚନା ଦିଏ, ଯେତେବେଳେ ସମ୍ରାଟ ପ୍ରାସାଦରେ ଅବସ୍ଥାନ କରୁଥାଆନ୍ତି ସେତେବେଳେ ପ୍ରାସାଦ ସମ୍ମୁଖରେ ହଳଦିଆ, ନୀଳ ଓ ଧୂସରିଆ, ଗୋଲାପି ରଙ୍ଗର ପତାକା ଉଡ଼ିବାର ଦେଖିବାକୁ ମିଳେ; କିନ୍ତୁ ତାଙ୍କର ଅନୁପସ୍ଥିତି ସମୟରେ କେବଳ ହଳଦିଆ ଓ ନୀଳ ପତାକା ପଡ଼େ ।

ସେଠାକାର ସମ୍ରାଟ ଆମ ଦେଶର ରାଷ୍ଟ୍ରପତିଙ୍କ ଭଳି ସମ୍ମାନର ଅଧିକାରୀ; କିନ୍ତୁ ତାଙ୍କର ସେଠାକାର ଲୋକସଭାକୁ ଭଙ୍ଗ କରିପାରିବାର କ୍ଷମତା ରହିଛି । ଯାହା ଆମର ରାଷ୍ଟ୍ରପତିଙ୍କର କ୍ଷମତା ଅନ୍ତର୍ଗତ ନୁହେଁ ।

ସେଠାକାର ଲୋକସଭା, ବହୁରଙ୍ଗର ଛାୟା ସହ ଧଳା ପ୍ରାସାଦ । ଏହାକୁ ଏମ୍.ଆର୍.ଟି. ହାଉସ୍, ସିଙ୍ଗାପୁର ବୋଲି ମଧ୍ୟ କୁହାଯାଏ । ଲୋକସଭାରେ ଦୁଇଟି ସଭା ଅଛି । ପ୍ରଥମଟି ହେଲା ଉଚ୍ଚ ସଭା (Upper house) ଓ ଦ୍ୱିତୀୟଟି ହେଲା ନିମ୍ନ ସଭା (Lower house) ।

ଉଚ୍ଚସଭା ସିନେଟ୍ ସଭ୍ୟମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲାବେଳେ ନିମ୍ନସଭା ଲୋକ ପ୍ରତିନିଧିମାନଙ୍କର ସଭା ।

ସହିଦ୍‌ମାନଙ୍କ ସ୍ମୃତିସ୍ତମ୍ଭ ବହନ କରି ଦଶଟି ଦେଶରେ ଏସିଆନ୍ ଉଦ୍ୟାନ (Asia Park) ନିର୍ମାଣ କରାଯାଇଛି । ସେ ଦେଶଗୁଡ଼ିକ ହେଲା– ମାଲୟେସିଆ, ସିଙ୍ଗାପୁର, ଫିଲିପାଇନ୍‌ସ, ଇଣ୍ଡୋନେସିଆ, ଥାଇଲାଣ୍ଡ, ବ୍ରୁନେଇ, ଭିଏତ୍‌ନାମ, ଲାଓସ୍, କାମ୍ବୋଡ଼ିଆ ଓ ମିଆଁମାର ।

କେତେକ ସହିଦ୍‌ଙ୍କର ସ୍ମୃତିସ୍ତମ୍ଭ ଏଠାରେ ମଧ୍ୟ ସ୍ଥାନିତ ହେଇଛି– ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮)ର, ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯-୪୫)ର ଓ ଆକସ୍ମିକ ଅଭୂତପୂର୍ବ ଘଟଣା ସମୟର(Emergency) ଦେଶମାତୃକା ପାଇଁ ପ୍ରାଣ ଆହୂତି ଦେଇଥିବା ବୀର ଯବାନମାନଙ୍କର ସ୍ମୃତି ଉଦ୍ଦେଶ୍ୟରେ ଏହା ନିର୍ମିତ ହେଇଛି ।

ସେ ସମୟରେ ଭାରତୀୟ ଜାତୀୟ ସୈନ୍ୟମାନଙ୍କର ଏକ ବାହିନୀ ସେଠାରେ ମଧ୍ୟ ମୁତୟନ ହୋଇଥିଲେ; ମାତ୍ର ସେମାନେ ଜାପାନୀମାନଙ୍କ ସପକ୍ଷରେ ଯୁଦ୍ଧ କରୁଥିଲେ, ଯେତେବେଳେ ଇଂରେଜମାନେ ଶାସନରେ ଥିଲେ । ଇଂରେଜମାନେ ଏଠାରେ ଆମ ଦେଶ ଶାସନରେ ମଧ୍ୟ ଥିଲେ । ଏଣୁ ଆମର ସୈନ୍ୟବାହିନୀ ଇଂରେଜମାନଙ୍କ କୋପଦୃଷ୍ଟିରେ ପଡ଼ିଥିଲେ ।

ସେ ଯାହାହେଉ, ସେ ଉଦ୍ୟାନରେ ପ୍ରଦର୍ଶିତ ହୋଇଥିବା ବୀର ସୈନିକମାନଙ୍କ ଉପରେ ଯେଉଁ ଅକଥନୀୟ ଅତ୍ୟାଚାରର ନିଖୁଣ ଚିତ୍ର ସହ ଦାରୁଣ ହୃଦୟ ବିଦାରକ ବର୍ଣ୍ଣନା ମୋ' ମନକୁ କ୍ଷତାକ୍ତ କଲା ।

ପରବର୍ତ୍ତୀ ଗନ୍ତବ୍ୟସ୍ଥଳ ଆମର ଥିଲା, ସେଠାକାର ଜାତୀୟ ମସ୍‌ଜିଦ୍– ସେ ସମସ୍ତ ଅଞ୍ଚଳ ମୁସଲମାନ ବହୁଳ ଅଞ୍ଚଳ ହେଇଥିବାରୁ ମାନ୍ୟଗଣ୍ୟ ଓ ପ୍ରଭାବଶାଳୀ ଲୋକମାନଙ୍କ ଦ୍ୱାରା ନିର୍ମିତ ମୁସଲମାନଙ୍କ ମନ୍ଦିର ସେ



ଅଞ୍ଚଳରେ ସ୍ଥାନିତ କରି ତାହାକୁ 'ଜାତୀୟ ମସଜିଦ୍' ରୂପେ ନାମିତ କରାଯାଇଛି ।

ସେଠାରେ ସ୍ଥାନିତ ପ୍ରାୟ ସମସ୍ତ ମସ୍‌ଜିଦ୍ ଅତ୍ୟନ୍ତ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ, ସ୍ଥାପତ୍ୟନୈପୁଣ୍ୟ ପ୍ରାସାଦଗୁଡ଼ିକ ଗୋଟିଏ ଗୋଟିଏ 'ଛତ୍ର' ବା ଛତା ଆକାରରେ ନିର୍ମିତ । ସେଗୁଡ଼ିକ ଦୃଷ୍ଟିକୁ ଯେଭଳି ମନୋରମ, ସେ ପରିସର ମଧ୍ୟ ସେହିଭଳି ଉପଭୋଗ୍ୟ ।

ସେଠାରେ ଗୋଟିଏ ରମ୍ୟ କାରୁକାର୍ଯ୍ୟପୂର୍ଣ୍ଣ ଦର୍ଶକ-ମଞ୍ଚ ଭାରତର ତତ୍କାଳୀନ ସମ୍ରାଟ, ଶାହାଜାହାନଙ୍କ ଦ୍ୱାରା ନିର୍ମାଣ କରାଯାଇଛି । ତହିଁରେ ଏକାଦଶରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ବହୁ ପ୍ରଭାବଶାଳୀ ଓ ନେତୃସ୍ଥାନୀୟ ମୁସଲମାନ ନେତା ଓ ବ୍ୟକ୍ତିବିଶେଷଙ୍କର ତୈଳଚିତ୍ର ଓ ମୂର୍ତ୍ତି ସ୍ଥାପନା କରାଯାଇଛି । କ୍ରମେ ସେ ସମସ୍ତ ଅଞ୍ଚଳ ବିଶେଷ ପର୍ଯ୍ୟଟନସ୍ଥଳୀର ମାନ୍ୟତା ଲାଭ କରିପାରିଛି ।

ନିକଟସ୍ଥ ଆରିୟାନ୍ ହୋଟେଲରେ ଆମର ମଧ୍ୟାହ୍ନଭୋଜନ କରିବା ପାଇଁ ସ୍ଥିର ହୋଇଥିଲା । ସେ ହୋଟେଲ୍‌ରେ ଭାରତୀୟ ବ୍ୟଞ୍ଜନର ବ୍ୟବସ୍ଥା ହୋଇଥିଲା ଭୋଜନ ପାଇଁ ସମୟ ଅନୁକୂଳ ଥିଲା । ଖାଦ୍ୟ ସ୍ୱାଦଯୁକ୍ତ ଥିଲା । ଏଣୁ ମଧ୍ୟାହ୍ନ ସମୟରେ ବେଶ୍ ଗୋଟେ ଭୁରିଭୋଜନ ହେଲା ।

ନିକଟସ୍ଥ କେତେକ ରମଣୀୟ ଓ ବିଶ୍ୱପ୍ରସିଦ୍ଧ ଇମାରତ ଦେଖିବାର ସୁଯୋଗ ପାଇଲୁ । ତା' ଭିତରେ ନିର୍ମିତ 'ଯୁଗଳ ପ୍ରାସାଦ' ଦେଖିଲୁ । ପ୍ରାସାଦ ଦୁଇଟି ସୁନ୍ଦର ସୁଉଚ୍ଚ ଓ ନଭଶ୍ଚୁମ୍ବୀ । ସେମାନେ ଏକ ଶୂନ୍ୟ ବା ଆକାଶ ସେତୁ ଦ୍ୱାରା ସଂଯୁକ୍ତ । ପ୍ରାସାଦ ଦୁଇଟିର ଶିଖରକୁ ଅନାଇ ହୁଏନାହିଁ । ଶିର ଭାଙ୍ଗିଯାଏ । ପୃଷ୍ଠଭାଗକୁ ନିପତିତ ହେଲାଭଳି ଲାଗେ ।



ଏହି ଇମାରତ ୮୮ଟି ତାଲାର ପ୍ରାସାଦ । ଏହାର ସମ୍ପୂର୍ଣ୍ଣ ଉଚ୍ଚତା ଥିଲା ୪୫୨ ମିଟର । ଦିନ ଥିଲା, ଏହା ପୃଥିବୀର ଉଚ୍ଚତମ ପ୍ରାସାଦ ରୂପେ ମାନ୍ୟତା ପାଇଥିଲା । ପରବର୍ତ୍ତୀ ଅବସ୍ଥାରେ ଅନ୍ୟାନ୍ୟ ଦେଶ ସେ ସ୍ୱୀକୃତିର ହକ୍‌ଦାର ହେବାପାଇଁ ପ୍ରତିଯୋଗୀ ଦଳରେ ଏହି 'ଯୁଗଳ ପ୍ରାସାଦ' (twin Tower) ର ସ୍ଥାନ ପଞ୍ଚମ ସ୍ଥାନକୁ ଖସିଆସିଛି । ବର୍ତ୍ତମାନ ଦୁବାଇରେ ନିର୍ମିତ ଉଚ୍ଚତମ ଇମାରତ୍ ପୃଥିବୀର ଉଚ୍ଚତମ ବୋଲି ସ୍ୱୀକୃତି ପାଇଛି ।

ତା'ପରେ କିଛି ଦୂରରେ ଥିବା 'ଚକୋଲେଟ୍ ପ୍ରଦର୍ଶନ କେନ୍ଦ୍ର'କୁ ଯିବାର ଥାଏ । ଏଣୁ ଆମେ ସମସ୍ତେ ବସ୍‌ରେ ଚଢ଼ିଲୁ । ବସ୍ ଯଥାସ୍ଥାନରେ ପହଞ୍ଚାଇ ଦେଲା । ତାହା ଥିଲା ଏକ ବ୍ୟବସାୟିକ ଅନୁଷ୍ଠାନ ।

ଭିନ୍ନ ଭିନ୍ନ ପ୍ରକାରର, ଭିନ୍ନ ଭିନ୍ନ ଆକାରର ସୁସ୍ୱାଦୁ ଚକୋଲେଟ୍ ସେଠାରେ ପ୍ରଦର୍ଶିତ ହେଉଥିବାର ଦେଖିଲୁ । ପ୍ରାୟ ପାଖାପାଖି ଶସ୍ତାରେ ମିଳୁଥାଏ । ଗୃହ ଲେଉଟାଣି ଆମେ କିଛି 'ଚକୋଲେଟ୍' ପିଲାମାନଙ୍କ ପାଇଁ ଆଣିବାକୁ ଚାହିଁଲୁ । ଏତେଦିନ ରହିବ କି ନାହିଁ ସନ୍ଦେହ ହେଲା । ତେବେ ସେମାନଙ୍କ ଉପଦେଶରେ କିଛି ଚକୋଲେଟ୍, ଯାହା କିଛିଦିନ ରହିପାରିବ ଓ ମିଳେଇ ଯାଇ ନଷ୍ଟ ନ ହେବ ସେହିଭଳି କିଛି ଚକୋଲେଟ୍ କିଣିବାକୁ ଚାହିଁଲୁ ।

ସେ ଗୋଟିଏ ବ୍ୟବସାୟିକ ଅନୁଷ୍ଠାନ ଥିଲା । ନାମ ଥିଲା, 'କୋକୋ ବଟିକ୍' (Cocoa Botique) ସେମାନେ ପରିଭ୍ରମଣକାରୀଙ୍କ ମାନସିକତାକୁ ଠିକ୍ ଭାବେ ବୁଝନ୍ତି । ପର୍ଯ୍ୟଟନ କେନ୍ଦ୍ର ହେଇଥିବାରୁ ବହୁ ଲୋଭନୀୟ ଓ ଆକର୍ଷଣୀୟ 'ଅଫର୍' ଦେଇ ଏକ ପ୍ରକାର ଆମମାନଙ୍କୁ କିଛି ନେବାପାଇଁ ବାଧ୍ୟ କଲେ । ଆମେ ସମସ୍ତେ କିଛି କିଛି କିଣିଲୁ । ଅଧିକ ଯେଉଁମାନେ କିଣିଲେ, ସେମାନଙ୍କୁ ବୋହି ଆଣିବା ପାଇଁ ଗୋଟିଏ ଗୋଟିଏ ଆକର୍ଷଣୀୟ ଝୋଲା ମଧ୍ୟ ଦେଲେ ।

ତା'ପରଦିନ ଆମକୁ 'ଥାଇଲାଣ୍ଡ' ଭ୍ରମଣରେ ଯିବାର ଥିଲା । ଏଣୁ ଅପରାହ୍ଣରେ ହୋଟେଲକୁ ଫେରି ଜିନିଷପତ୍ର ବନ୍ଧାବନ୍ଧି କରିବାରେ ଲାଗିଲୁ । ସମସ୍ତେ ପ୍ରାୟ କ୍ଳାନ୍ତ ହେଇଯାଇଥିଲୁ । ତେଣୁ ସେ ସବୁ କରିବା ପୂର୍ବରୁ ମୁଁ ଅନ୍ତତଃ ଟିକେ ବିଶ୍ରାମ ନେଲି । ସନ୍ଧ୍ୟାର ଚା', ସ୍ନାକ୍ସ ଓ ରାତ୍ରିଭୋଜନ ସବୁଦିନ ପରି ବ୍ୟବସ୍ଥା ହୋଇଥିଲା । ଆମେ ଟିକେ ସହଳ ରାତ୍ରିଭୋଜନ ସାରି ରାତିରେ ଟିକେ ଭଲଭାବେ ବିଶ୍ରାମ ପାଇଁ ସହଳ ଶୋଇଗଲୁ । (ସମାପ୍ତ)

*ପ୍ଲଟ୍ ନଂ-୧୫୭୧, ମହାନଦୀ ବିହାର, କଟକ-୪*



# ଲେଖନୀର ପାଠଶାଳା



ରାମକୃଷ୍ଣ ନନ୍ଦ

ଯେଉଁମାନେ ଆମ ଶବ୍ଦଧନ୍ଦାରେ ଭାଗ ନିଅନ୍ତି, ସେମାନେ ଏହାକୁ କେବଳ ଗୋଟିଏ ଖେଳ ନ ଭାବି ଶବ୍ଦଶିକ୍ଷାର ଏକ ମାଧ୍ୟମ ଭାବିଲେ ଅନେକ ବନାନ ଭୁଲ୍ ସୁଧାରି ପାରିବେ । 'ବିଷଣ୍ଣ'କୁ 'ବିଷର୍ଣ୍ଣ ' ଲେଖିବା ଏକ ସାଧାରଣ ଅଶୁଦ୍ଧି । ବର୍ଣ୍ଣ, କର୍ଣ୍ଣ, ସ୍ୱର୍ଣ୍ଣ ପରି ଉଚ୍ଚାରଣ କରି ଅନେକ ଶେଷ ଅକ୍ଷରରେ ରେଫ୍ ଦେଇ ଦିଅନ୍ତି । ସୁଖର କଥା, ବାରମ୍ବାର ଶବ୍ଦଧନ୍ଦାରେ ଆମେ ଏହି ଶବ୍ଦଟି ଦେଇ ସୁଫଳ ପାଉଛୁ ।

ଗତ ମାସ ଶବ୍ଦଧନ୍ଦାରେ ଆଉ ଗୋଟିଏ ଶବ୍ଦ 'ଶୟାନ' 'ଯାତାୟାତ' ସଙ୍ଗେ ଛନ୍ଦା ହୋଇଥିଲା । ସୂଚନାରେ 'ଶୟାନ'ର ଅର୍ଥ ଦିଆଯାଇଥିଲା 'ଶୋଇଥିବା' । କେତେକ ପିଲା ଉତ୍ତରଦେଲେ 'ଶୟନ' ; କିନ୍ତୁ ତାହା ଭୁଲ୍ । 'ଶୋଇଥିବା ପଶୁ'କୁ କ'ଣ 'ଶୟନ ପଶୁ' କୁହାଯିବ ? ଅଭିଧାନ ଦେଖିଥିଲେ ଠିକ୍ ଶବ୍ଦଟି ମିଳିଥାନ୍ତା । ମଧୁସୂଦନଙ୍କ 'ସୀତା ବନବାସ' କବିତାରେ ଏ ଶବ୍ଦଟି ଅଛି--

ସାୟାହ୍ନେ ବେଦୀ ଚଉପାଶେ ଶୟାନ
ରୋମନ୍ଥେ ରତ ଯହିଁ କୁରଙ୍ଗମାନ ।

ପୂର୍ବେ ଏହା ସପ୍ତମ ଶ୍ରେଣୀର ପାଠ୍ୟପୁସ୍ତକରେ ଥିଲା । କେତେକ ଯୁକ୍ତି କରନ୍ତି--'କଠିନ ଶବ୍ଦ ଶିଖିବାର ଆବଶ୍ୟକତା କ'ଣ ? ଏ ଯୁକ୍ତି ଠିକ୍ ନୁହେଁ । ତୁମେ କଠିନ

ଶବ୍ଦ ନିଜେ ବ୍ୟବହାର ନ କରିପାର, କିନ୍ତୁ ପ୍ରାଚୀନ ସାହିତ୍ୟକୁ ବୁଝିବା ପାଇଁ ଏହା ଦରକାର। ମଧୁସୂଦନ ତ ଏତେ ପ୍ରାଚୀନ ନୁହନ୍ତି। ଆମେ ସେ ସବୁ କବିଙ୍କ ଲେଖା ନ ପଢ଼ିଲେ ସାହିତ୍ୟ ଶିଖିବା କଣ ?

ଏବର କେତେକ ଅଧାପାଠୁଆ ମନେକରନ୍ତି-- ଶୁଦ୍ଧ ଭାଷା ନ ଜାଣି ମଧ୍ୟ ସେମାନେ ସାହିତ୍ୟିକ ହୋଇପାରିବେ। ଯେପରିକି ଭାଷା ସଙ୍ଗେ ସାହିତ୍ୟର ସମ୍ପର୍କ ନାହିଁ। ଆମେ ଗୋଟିଏ କବିତା ପାଇଛୁ, ଯାହାର ଶୀର୍ଷକ ଅଛି 'ଆମେ ସବୁ ଭାଇ ଭାଇ'। ଆଉ ଜଣେ ଲେଖକଙ୍କ ଚିଠି ଦେଖନ୍ତୁ--' ମୋ ଗପଟି ସଂସାରରେ ସ୍ଥାନ ପାଇବ କି ନା ମୁଁ ଯାଣେନା, ତଥାପୀ ପଠାଉଛି। ନମଷ୍କାର ସହ ରହୁଛି। ଆପଣଙ୍କର--'

ଭାଇ, ତଥାପି, ଜାଣେନା, ନମସ୍କାର--ଏ ସବୁ କ'ଣ କଠିନ ଶବ୍ଦ ? ଏଭଳି ସାଧାରଣ ଶବ୍ଦ ଲେଖି ନ ଜାଣି ମଧ୍ୟ ଲେଖକ ହେବାକୁ ଆଶା ! ସଂସାର ପତ୍ରିକା ପିଲାଙ୍କୁ ଶିକ୍ଷା ଦେବା ପାଇଁ ଉଦ୍ଦିଷ୍ଟ। ତେଣୁ ଏପରି ଭୁଲ୍ ଦେଖିବା ମାତ୍ରେ ଆମେ ତାକୁ ବିଚାରକୁ ନେଉ ନା।

ଜଣେ ସରକାରୀ କର୍ମଚାରୀଙ୍କ ଫାଟକରେ ଥିବା ନାମଫଳକରେ ଦେଖିଲୁ, ଲେଖାଅଛି 'ଅଧିକ୍ଷଣ ଯନ୍ତ୍ରୀ'। ମୁଖ୍ୟ ରାସ୍ତା କଡ଼। ଅନେକ ଲୋକ ଦେଖୁଥିବେ । ଶବ୍ଦଟି ଅଧି+ଇକ୍ଷଣ=ଅଧୀକ୍ଷଣ ହେବା କଥା; କିନ୍ତୁ ଏ ବିଷୟ ଦେଖୁଛି କିଏ ?

ଆଉ କେତୋଟି ଅଶୁଦ୍ଧ ଶବ୍ଦ ଛପା ବହିରୁ ପାଇଲୁ। ସେଗୁଡ଼ିକ ବିଷୟରେ ଆଲୋଚନା କରିବା ଆସନ୍ତୁ।

୧) ବିଶ୍ରାମଗାର-- ଏହାର ଶୁଦ୍ଧ ରୂପ 'ବିଶ୍ରାମାଗାର'। ବିଶ୍ରାମଗୃହ ଅର୍ଥର ଏହା ବ୍ୟବହୃତ। ଆଗାର ଅର୍ଥ ଗୃହ । ବିଶ୍ରାମ+ଆଗାର=ବିଶ୍ରାମାଗାର (ସନ୍ଧି ଅନୁସାରେ)।

୨) ନିରୂପମା--ଏ ଶବ୍ଦଟି ମଧ୍ୟ ସନ୍ଧି ଦ୍ୱାରା ନିଷ୍ପନ୍ନ। ନିଃ+ଉପମା=ନିରୁପମା (ଯାହାର ଉପମା ନାହିଁ)। ଉପମାରେ 'ଉ' ଅଛି, ତେଣୁ ରୁ ହେବ।

୩) ପର୍ବପର୍ବାଣୀ-- ସ୍ତ୍ରୀ ଲିଙ୍ଗରେ ଶେଷକୁ ଣୀ ହୁଏ। ଯଥା-- ରାଣୀ, ବାଘୁଣୀ, ନାତୁଣୀ ଇତ୍ୟାଦି। କିନ୍ତୁ ଏହା ଏପରି ଶବ୍ଦ ନୁହେଁ। ତେଣୁ ଠିକ୍ ଶବ୍ଦଟି ହେବ ପର୍ବପର୍ବାଣି।

୪) (ଦିଲ୍ଲୀ ଆକାଶବାଣୀରୁ) ସମସ୍ତେ ସଂଯମତା ଅବଲମ୍ବନ କରିବା ଆବଶ୍ୟକ। -- ଏଥିରେ ଥିବା 'ସଂଯମତା' ସ୍ଥାନରେ କେବଳ 'ସଂଯମ' ହେବ। ଗୁଣବାଚକ ବିଶେଷଣରେ ତା, ତ୍ୱ, ଯ ଯୋଗକରି ତାକୁ ବିଶେଷ୍ୟ କରାଯାଏ, ଯଥା-- ଦୂର+ତା=ଦୂରତା, ଦୂର+ତ୍ୱ=ଦୂରତ୍ୱ, ଧୀର+ଯ=ଧୈର୍ଯ୍ୟ ; କିନ୍ତୁ ସଂଯମ ତ ବିଶେଷ୍ୟ, ସେଥିରେ 'ତା' ଲାଗିବ କାହିଁକି ?

୫) Olympicକୁ କେହି କେହି ଓଡ଼ିଆରେ 'ଅଲମ୍ପିକ୍' ଲେଖନ୍ତି ଓ କହନ୍ତି। କିନ୍ତୁ ଏପରି ବିକୃତ ଉଚ୍ଚାରଣ ନ କରି 'ଅଲିମ୍ପିକ୍' କହିବା ଉଚିତ।

୬) ଗଣତନ୍ତ୍ର ସଙ୍ଗେ ନିର୍ବାଚନ ଓତଃପ୍ରୋତ ଭାବରେ ଜଡ଼ିତ । ଏଠାରେ ଓତଃପ୍ରୋତ ନ ହୋଇ 'ଓତପ୍ରୋତ' ହେବ। ବିସର୍ଗ ଦେବା ଭୁଲ୍।

**

ଅନ୍ଧକୁ ଚଷମା ଦେଇ ଧନ୍ୟବାଦ ପାଇବାକୁ ଆଶା ରଖନାହିଁ। --ଫୁଲର୍

# ଚକରା ମୁଣ୍ଡରେ ଚଡ଼କ

ଶ୍ରୀ ବିଜୟ୍ ଚନ୍ଦ୍ର ମହାରଣା



ଗୋଟିଏ ଗାଁରେ ଜଣେ କୃପଣ ବୁଢ଼ା ଥାଏ। ତାହାର ଅଚଳାଚଳ ସମ୍ପତ୍ତି। କୃପଣ ସାଙ୍ଗକୁ ବୁଢ଼ାଟି ବଡ଼ ଲୋଭୀ। ଗାଁ'ସାରା ଲୋକମାନେ ଭାବନ୍ତି ବୁଢ଼ାର ନାଁ ଧରିଲେ ଖାଇବାକୁ ମିଳିବ ନାହିଁ। ସେ ଲୋକଙ୍କୁ ଟଙ୍କା ଦେଇ ସେମାନଙ୍କଠାରୁ ଚଢ଼ା ଦରରେ ସୁଧ ଆଦାୟ୍ କରୁଥିଲା। ବୁଢ଼ୀ କିନ୍ତୁ ବୁଢ଼ାର ସମ୍ପୂର୍ଣ୍ଣ ଓଲଟା। ସବୁବେଳେ ଗରିବଲୋକମାନଙ୍କୁ ସାହାଯ୍ୟ କରୁଥାଏ। ହେଲେ ସେମାନଙ୍କର କୌଣସି ପିଲାପିଲି ନ ଥିଲେ। ଲୋକମାନେ କହନ୍ତି-- ବୁଢ଼ାର ସ୍ୱଭାବ ଦେଖି ଭଗବାନ କୋଳରେ ପିଲାଟିଏ ବି ଦେଇନାହାନ୍ତି।

ବୁଢ଼ୀ ସବୁବେଳେ ବୁଢ଼ାକୁ ବୁଝାଉଥାଏ। ବୁଢ଼ା କେବେ ବି ଶୁଣୁ ନ ଥାଏ। ବୁଢ଼ା କହେ, "ତୁ କିଛି ଜାଣିନୁ! ଆଜିର ଯୁଗରେ ପଇସା ସବୁକିଛି। ପଇସା ଥିଲେ ସବୁ ମିଳିବ। ଏପରିକି ପୁଅ ମଧ୍ୟ। ପଇସା ଦେଲେ ଏପରି ପୁଅ ମିଳିବ, ଯିଏ ମଲା ଯାଏଁ ଆମର ସେବା କରିବ। ପୁଅ, ପୁଅ ହୋଇ ତୁ ଏମିତି ବାୟାଣୀ ହୁଅନା।"

ଦିନ ପରେ ଦିନ ଗଡ଼ି ଚାଲିଲା। ବୟସ ଯେତେ ବଢ଼ିଲା, ବୁଢ଼ାର ଲୋଭ ସେତେ ପରିମାଣରେ ବଢ଼ିଲା। କିଛିଦିନ ପରେ ଗାଁ ଲୋକ ଜାଣିବାକୁ ପାଇଲେ ଯେ ଚକରା ବୋଲି ଗରିବ ଲୋକଟିଏ ବୁଢ଼ାକୁ ମନ ଲଗାଇ ସେବା କରି ଆସୁଛି। ଲୋକମାନେ ଏ ବିଷୟରେ ଯେତେ ପଚାରିଲେ ବି କିଛି କହୁନାହିଁ। ଲୋକମାନେ କୁହାକୁହି ହେଲେ- ବୁଢ଼ା କ'ଣ ସତରେ ବଦଳି ଗଲାଣି ନାଁ କ'ଣ ? ଚକରା ନାମରେ ସମ୍ପତ୍ତି ରଖିଦେବାକୁ ପ୍ରତିଜ୍ଞା କରିଥିବ ବୋଧହୁଏ। ସେଇ ଲୋଭରେ ହୁଏତ ଚକରା ମନ ଲଗାଇ ବୁଢ଼ାବୁଢ଼ୀର ସେବା କରୁଛି। ତା' ନହେଲେ ଏ କୃପଣ ବୁଢ଼ାର ଘରେ କେହି କେବେ ଭଲମନ୍ଦରେ ଦିନେ ଓଳିଏ ବି ରହିବାର କେହି ଦେଖିନାହିଁ।

ଏମିତି କିଛି ବର୍ଷ ବିତିଗଲା। ବୁଢ଼ୀ ପ୍ରଥମେ ଆଖି ବୁଜିଲା। ତାହାର ଦୁଇ ବର୍ଷ ଭିତରେ ବୁଢ଼ା ବି ଆର ପାରିକୁ ଚାଲିଗଲା। ବୁଢ଼ାର ସମ୍ପର୍କୀୟମାନେ ଆସି ସମ୍ପତ୍ତି ପାଇଁ ଝଗଡ଼ା କଲେ। ସେତିକିବେଳେ ବୁଢ଼ାର ହାତଲେଖା ଚିଠିଟିଏ ଆଲମାରୀରୁ ମିଳିଲା। ଚିଠିରେ ଲେଖା ଥିଲା, "ଚକରା ମୋ'ଠାରୁ ଦୁଇହଜାର କରଜ ନେଇଥିଲା। ସୁଧ ବାବଦକୁ ସେ ମୋତେ ପୁଅ ଭଳି ସେବା କରିଛି। ଏବେ ସେ ଆଉ ସୁଧ ଦେବନି। ତା'ଠାରୁ କେବଳ ମୂଳଟି ନେବ।"

ଚିଠିର କଥା ଶୁଣି ଚକରା ମୁଣ୍ଡରେ ହାତ ଦେଇ ବସିଲା। ଭାବିଲା ତା' ମୁଣ୍ଡରେ କେତେବଡ଼ ଚଡ଼କ ପଡ଼ିଲା।

*ବାଲିପଦର, ଗଞ୍ଜାମ* **

---

**ସାଧାରଣଜ୍ଞାନ ପରୀକ୍ଷାର ଉତ୍ତର--** ୧। ଆରବ ସାଗର, ୨। ଅରୁଣାଚଳ ପ୍ରଦେଶ, ୩। ଆରିଏଲ ସାରୋନ, ୪। ମହାରାଷ୍ଟ୍ର, ୫। ଫେବୃଆରୀ ୨୧ ତାରିଖ, ୬। ବାହାରିନ୍ (Bahrain), ୭। ଉତ୍କଳ ଘଣ୍ଟ/ଆଶୁକବି ନାମରେ, ୮। ଆର୍ଜେଣ୍ଟିନାର ଇସାବେଲ ପେରନ (Isabel Paran), ୯। ବସନ୍ତ (Small-pox), ୧୦। ଗୁଜୁରାଟ୍ । (ଗତମାସ ସା.ଜ୍ଞା. ପରୀକ୍ଷାର ଠିକ୍ ଉତ୍ତର- ୭। ରୁକୀୟା ସୁଲତାନ ବେଗମ୍, ୮। କୃଷିକ୍ଷେତ୍ରରେ ଉତ୍କର୍ଷତା ପାଇଁ ।)



# ମିଳିମିଳା

ଡାକ୍ତର ସଚ୍ଚିଦାନନ୍ଦ
ଶତପଥୀ

ମିଳିମିଳା ରୋଗ ବିଷୟରେ ତୁମେ ସମସ୍ତେ ଜାଣିଥିବ। ଇଂରାଜୀରେ ଏହାକୁ 'ମିଜିଲସ୍' ବୋଲି କୁହାଯାଏ। ଏହାର ଡାକ୍ତରୀ ନାମ ହେଉଛି 'ରୁବିଓଲା'। ରୁବିଓଲା ଶବ୍ଦର ଅର୍ଥ ହେଉଛି ନାଲିଦାଗ। ମିଳିମିଳା ରୋଗରେ ଦେହରେ ନାଲି ନାଲି ଦାଗ ସବୁ ହେଉଥିବାରୁ ବୋଧହୁଏ ଏପରି ନାମକରଣ କରାଯାଇଛି।

ଦଶମ ଶତାବ୍ଦୀର ଆରମ୍ଭରେ ଆରବୀୟ ଚିକିତ୍ସକ ଆବୁବେକର ପ୍ରଥମେ ଏହି ରୋଗ ବିଷୟରେ ସୂଚନା ଦେଇଥିଲେ। ତା'ପରେ ଦୀର୍ଘ ବର୍ଷ ପର୍ଯ୍ୟନ୍ତ ଏହା ଉପରେ କୌଣସି ଆଲୋକପାତ କରାଯାଇ ନଥିଲା। ୧୮୪୬ ମସିହାରେ ପାନମ୍ ନାମକ ଜଣେ ଗବେଷକ ମିଳିମିଳାର ଗତିବିଧି ଉପରେ ଗବେଷଣା ଆରମ୍ଭ କରିଥିଲେ। ଆମେରିକୀୟ ଗବେଷକ ଏଣ୍ଡର୍ସ ଓ ତାଙ୍କ ସହକର୍ମୀଗଣ ୧୯୫୪ ମସିହାରେ ମିଳିମିଳା ସୃଷ୍ଟିକାରକ ଜୀବାଣୁଙ୍କୁ ଚିହ୍ନଟ କରି, ତାହା ହିଁ ମିଳିମିଳା ରୋଗର କାରଣ ବୋଲି ମତ ଦେଇଥିଲେ। ୧୯୫୮ ମସିହାରେ ମିଳିମିଳା ପ୍ରତିଷେଧକ ପ୍ରଥମଥର ପାଇଁ ଆମେରିକାରେ ପରୀକ୍ଷା-ମୂଳକ ଭାବରେ ବ୍ୟବହାର କରାଯାଇଥିଲା। ୧୯୬୩ ମସିହାରେ ଆମେରିକାରେ ଏହାର ବ୍ୟବହାର ପାଇଁ ଲିଖିତ ଅନୁମତି ଦିଆଯାଇଥିଲା। ୧୯୫୮ ମସିହା ବେଳକୁ ଏହା ଭାରତରେ ପ୍ରାପ୍ତ ହୋଇଥିଲା।

ମିଳିମିଳା ହେଉଛି ସାରା ପୃଥିବୀର ଏକ ସମସ୍ୟା। ଆମ ଭାରତ ତଥା ଆମ ରାଜ୍ୟ ଓଡ଼ିଶାରେ ମଧ୍ୟ ଏହି ରୋଗର ସମସ୍ୟା ଅତି ଜଟିଳ। ଭାରତର ଶତକଡ଼ା ପ୍ରାୟ ୯୫ ଭାଗ ଶିଶୁ ୫ ବର୍ଷ ବୟସ ମଧ୍ୟରେ ଏହି ରୋଗଦ୍ୱାରା ଆକ୍ରାନ୍ତ ହୋଇଥା'ନ୍ତି। ଯେଉଁ ଶିଶୁ ସୁସ୍ଥସବଳ ରହିଥାନ୍ତି, ସେମାନଙ୍କ ପାଇଁ ଏହି ରୋଗ ବିଶେଷ କିଛି ସମସ୍ୟା ସୃଷ୍ଟି କରେନାହିଁ। କିନ୍ତୁ ପୁଷ୍ଟିହୀନତା ରୋଗ ଭୋଗୁଥିବା ଓ ରୋଗପ୍ରତିରୋଧକ ଶକ୍ତି ନ ଥିବା ଶିଶୁମାନଙ୍କଠାରେ ଏହା ବିଭିନ୍ନ ଜଟିଳତା ସୃଷ୍ଟି କରିଥାଏ ଓ ବେଳେବେଳେ ମୃତ୍ୟୁର କାରଣ ହୋଇଥାଏ।

**କାହିଁକି ହୁଏ--** ମିଳିମିଳା ରୋଗ ଏକପ୍ରକାର ଭୂତାଣୁ ଯୋଗୁଁ ସଂକ୍ରମିତ ହୋଇଥାଏ। ଏହାକୁ ମିଳିମିଳା ଭୂତାଣୁ ବା ମିଜିଲସ୍ ଭାଇରସ୍ ବୋଲି କୁହାଯାଏ। ଏହି ଭୂତାଣୁ ଅତି ମାତ୍ରାରେ ସଂକ୍ରାମକ। ଶୀତ ଓ ବସନ୍ତ ଋତୁରେ ଏହି ଭୂତାଣୁର ପ୍ରାଦୁର୍ଭାବ ଯଥେଷ୍ଟ ବଢ଼ି ଯାଇଥାଏ। ତେଣୁ ଏହି ଋତୁରେ ଅଧିକ ସଂଖ୍ୟାରେ ମିଳିମିଳା ହୋଇଥାଏ।

**କାହାକୁ ହୁଏ--** ମିଳିମିଳା ହେଉଛି ପିଲାମାନଙ୍କର ଏକ ରୋଗ। ତେବେ ଶିଶୁ ଜନ୍ମ ହେବାର ପ୍ରଥମ ଛଅ ମାସ ସମୟ ପର୍ଯ୍ୟନ୍ତ ଏହି ରୋଗ ପ୍ରାୟ ହୁଏନାହିଁ। ୬ମାସରୁ ପାଞ୍ଚବର୍ଷ ବୟସର ପିଲାମାନଙ୍କୁ ଏହା ପ୍ରାୟତଃ ହୋଇଥାଏ । ବୟସ୍କ ଲୋକଙ୍କଠାରେ ଏହା ଖୁବ୍ କମ୍ ଦେଖାଯାଏ। ପୁଅ ଓ ଝିଅ ସମାନ ଭାବରେ ଏଥିରେ ଆକ୍ରାନ୍ତ ହୋଇଥାନ୍ତି। ପୁଷ୍ଟିହୀନତା ହେଲେ ଓ ଦେହରୁ ରୋଗ ପ୍ରତିରୋଧକ ଶକ୍ତି କମିଗଲେ ଏହି ରୋଗ ସହଜରେ ଆକ୍ରମଣ କରିଥାଏ।

**କେମିତି ବ୍ୟାପେ--** ଆଗରୁ କୁହାଯାଇଛି, ମିଳିମିଳା ହେଉଛି ଏକ ଭୟଙ୍କର ସଂକ୍ରାମକ ରୋଗ। ରୋଗୀର ନାକ, ପାଟି ଓ ଶ୍ୱାସନଳୀରୁ ବାହାରୁଥିବା ବର୍ଜ୍ୟବସ୍ତୁଗୁଡ଼ିକରେ ଏହି ଭୂତାଣୁ ନିର୍ଗତ ହୋଇଥାଏ। ତେଣୁ ରୋଗୀର କାଶ, ଛିଙ୍କ, ଛେପ, ଖଙ୍କାର, କଫ ଇତ୍ୟାଦି ହିଁ ରୋଗ ସଂକ୍ରମଣ ପାଇଁ ଦାୟୀ ହୋଇଥାଏ। ବିନ୍ଦୁ ସଂକ୍ରମଣ ଓ ବାୟୁ ମାଧ୍ୟମରେ ଏହି ରୋଗ ଜଣଙ୍କଠାରୁ ଆଉ ଜଣଙ୍କ ପାଖକୁ ସଂକ୍ରମିତ ହୋଇଥାଏ। ରୋଗୀ ବ୍ୟବହାର କରୁଥିବା ପୋଷାକ ଓ ଆସବାବପତ୍ର ମଧ୍ୟ ପରୋକ୍ଷ ଭାବରେ ଏଥିପାଇଁ ଦାୟୀ ହୋଇଥାଏ। ଦୂଷିତ ଓ ଜନଗହଳି ପରିବେଶ ସଂକ୍ରମଣରେ ସାହାଯ୍ୟ କରିଥାଏ। ରୋଗର ପ୍ରାଥମିକ ଅବସ୍ଥା ଓ ଦେହରେ ଦାଗ ବାହାରିବା ଅବସ୍ଥାରେ ହିଁ ରୋଗୀ ଅଧିକ ସଂକ୍ରମଣକ୍ଷମ ହୋଇଥାଏ। ସେହି ଘରର ଅନ୍ୟ ପିଲାଙ୍କୁ ଏହା ବ୍ୟାପିବାର ଶତକଡ଼ା ୮୦ ଭାଗ ସମ୍ଭାବନା ରହିଥାଏ।

ଦେହରେ ଭୂତାଣୁ ପ୍ରବେଶ କରିବାର ପ୍ରାୟ ୧୦ ଦିନ ପରେ ରୋଗ ପ୍ରଥମ ଲକ୍ଷଣ ପ୍ରକାଶ ପାଏ ଓ ୧୪ ଦିନ ପରେ ଦେହରେ ପ୍ରଥମ ଦାଗ ଦେଖାଯାଇଥାଏ। ଏଥିରେ ପ୍ରଥମେ ଶର୍ଦ୍ଦି ଓ ଥଣ୍ଡାର ଲକ୍ଷଣସବୁ ପ୍ରକାଶ ପାଏ। ନାକରୁ ପାଣି ଗଡ଼େ, ଛିଙ୍କ ହୁଏ, ଦେହହାତ ଘୋଳାବିନ୍ଧା କରେ, ଜ୍ୱର ହୁଏ, କାଶ ହୁଏ, ଆଖି ନାଲି ପଡ଼ି ପାଣି ଗଡ଼େ, ଆଲୁଅକୁ ଚାହିଁଲେ କଷ୍ଟ ଲାଗେ, ବେଳେବେଳେ ଝାଡ଼ାବାନ୍ତି ମଧ୍ୟ ହୋଇପାରେ। ଦୁଇ ତିନି ଦିନ ପରେ ପାଟିର ପଛ ଦାନ୍ତର ଭିତରପଟ ଗାଲରେ ମନ୍ଦା ମନ୍ଦା ହୋଇ ଏକପ୍ରକାର ଦାଗ ଦେଖାଯାଏ। ଏହି ଦାଗର ରଙ୍ଗ ଲାଲ୍ ହୋଇଥାଏ ଓ ଏହା ମଝିରେ ନେଳିଆସିଆ ଧଳା ଚିହ୍ନ ରହିଥାଏ। ଏହି ଦାଗକୁ 'କପ୍‌ଲିକ୍ ଦାଗ' ବୋଲି କୁହାଯାଏ। ମିଳିମିଳା ରୋଗର ଏହା ଏକ ନିର୍ଦ୍ଦିଷ୍ଟ ଚିହ୍ନ।

ଜ୍ୱର ହେବାର ୩-୪ ଦିନ ପରେ ଓ ପାଟିରେ କପଲିକ୍ ଦାଗ ବାହାରିବାର ୨-୩ ଦିନ ପରେ ପ୍ରଥମେ କପାଳ, କାନ ପଛପଟ, ବେକ ଓ ମୁହଁରେ ମଶା କାମୁଡ଼ିବା ପରି ଲାଲ୍ ଲାଲ୍ ଦାଗ ବାହାରିଥାଏ। ତା'ପରେ ପିଠି, ଛାତି, ପେଟ, ହାତ, ଗୋଡ଼ ଓ ଶେଷରେ ପାଦ ପର୍ଯ୍ୟନ୍ତ ବାହାରିଯାଏ। ଏହା ଗୋଟି ଗୋଟି ହୋଇ ବାହାରିପାରେ କିମ୍ବା ମନ୍ଦା ମନ୍ଦା ହୋଇ ବାହାରିପାରେ। ପାଦ ପର୍ଯ୍ୟନ୍ତ ଦାଗ ବାହାରିବା ପରେ ଜ୍ୱର ଛାଡ଼ିଯାଏ, ଏଥିପାଇଁ ୩-୪ ଦିନ ସମୟ ଲାଗିଥାଏ। ଜ୍ୱର ଛାଡ଼ିଯିବା ପରେ ଦାଗଗୁଡ଼ିକ ମଉଳିଯାଇ ନୀଳ, ଲୋହିତ କିମ୍ବା ବାଇଗଣି ରଙ୍ଗ ଧାରଣ କରେ। ପରବର୍ତ୍ତୀ ୩-୪ ଦିନ ଭିତରେ ଚର୍ମରୁ ସୂକ୍ଷ୍ମ ଛାଲ ବାହାରିବାକୁ ଆରମ୍ଭ କରେ। ଏହାକୁ ରୋଗ ଆରୋଗ୍ୟ ହେବାର ଚିହ୍ନ ବୋଲି ଧରାଯାଏ। ଚର୍ମରୁ ଛାଲ ବାହାରିଗଲେ ମଧ ୨-୩ ମାସ ପର୍ଯ୍ୟନ୍ତ ଦେହରେ ବାଦାମୀ କିମ୍ବା ଧୂସର ରଙ୍ଗର ଦାଗ ରହିଥାଏ। ରୋଗର ପ୍ରଭାବରେ ଶିଶୁର ଦେହ ଦୁର୍ବଳ ହୋଇଯାଏ ଓ ତା'ର ଓଜନ କମିଯାଏ। ବେଳେବେଳେ ସେ ଶଯ୍ୟାଶାୟୀ ହୋଇଯାଏ।

**ଜଟିଳତା--** ମିଳିମିଳା ରୋଗରେ ବେଳେବେଳେ କେତେକ ଜଟିଳତା ଦେଖାଦେଇଥାଏ। ଏହି ଜଟିଳତା-ଗୁଡ଼ିକ ଭିତରେ-- କାନ ପାଚିବା, ନିମୋନିଆ, ବ୍ରୋଙ୍କାଇଟିସ୍, ବ୍ରୋଙ୍କୋନିମୋନିଆ, ଏନ୍‌କେଫାଲାଇଟିସ୍ ଇତ୍ୟାଦି ପ୍ରଧାନ। ଏହା ବ୍ୟତୀତ କେତେକଙ୍କୁ ତରଳ ଝାଡ଼ା ମଧ୍ୟ ଦୀର୍ଘ ଦିନ ଧରି ହୋଇଥାଏ । ଏହି ରୋଗରେ ଦେହରୁ ଭିଟାମିନ୍ 'ଏ'ର ପରିମାଣ ଯଥେଷ୍ଟ କମିଯାଏ। ତେଣୁ ଜେରୋପ୍‌ଥାଲମିଆ ରୋଗ ହୋଇ ଆଖି ନଷ୍ଟ ହୋଇଯିବାର ସମ୍ଭାବନା ରହିଥାଏ। ଦେହରେ ଯଦି ଆଗରୁ ଯକ୍ଷ୍ମା ରୋଗ ରହିଥାଏ, ମିଳିମିଳା ପରେ ତାହା ଖୁବ୍ ବଢ଼ିଯାଏ।

**କ'ଣ କରିବ--**

* ରୋଗୀକୁ ସମ୍ପୂର୍ଣ୍ଣ ବିଶ୍ରାମ ଦିଅ।
* ଶୀତଳ ପରିବେଶଠାରୁ ଦୂରେଇ ରଖ। କାରଣ ଥଣ୍ଡା ସଂସ୍ପର୍ଶରେ ଆସିଲେ ନିମୋନିଆ, ବ୍ରୋଙ୍କୋ-ନିମୋନିଆ ହେବାର ଆଶଙ୍କା ରହିଥାଏ।
* ଦେହରୁ ଜ୍ୱର, ବ୍ୟଥା, ବେଦନା ଆଦି କମାଇବା ପାଇଁ ପାରାସିଟାମଲ୍ ଜାତୀୟ ଔଷଧ ଦିଅ।
* ଦେହରୁ କୁଣ୍ଡାଇହେବା କମାଇବା ପାଇଁ ସେଟ୍ରିଜିନ୍ ପରି ଔଷଧ ଦିଅ।
* ଦେହକୁ ଆରାମ ଲାଗିବା ପାଇଁ ଦେହରେ ଡଷ୍ଟିଂ ପାଉଡର ଛିଞ୍ଚ।
* ଜୀବାଣୁ ସଂକ୍ରମଣ ରୋକିବା ପାଇଁ ଡାକ୍ତରଙ୍କ ପରାମର୍ଶ କ୍ରମେ ଆଣ୍ଟିବାୟୋଟିକ୍ ଔଷଧ ଦିଅ।
* ମିଳିମିଳା ଏକ ଭୂତାଣୁଜନିତ ରୋଗ ହୋଇଥିବାରୁ ଡାକ୍ତରଙ୍କ ପରାମର୍ଶ କ୍ରମେ ଆସାଇକ୍ଲୋଭର ଜାତୀୟ ଭୂତାଣୁ ନିରୋଧୀ ଔଷଧ ଦିଅ।
* କିଛି ଭିଟାମିନ୍ ଜାତୀୟ ଔଷଧ ଦିଅ।
* ରୋଗୀକୁ ପ୍ରଚୁର ପାଣି ପିଇବାକୁ ଦିଅ।
* ଏବଂ ରୋଗୀକୁ ପୁଷ୍ଟିକର ଓ ଲଘୁପାକ ଖାଦ୍ୟ ଖାଇବାକୁ ଦିଅ। କୌଣସି ପ୍ରକାର ଖାଦ୍ୟ ବାରଣ କରନାହିଁ। ରୋଗୀ ହଜମ କରିପାରୁଥିବା ଭଳି ଖାଦ୍ୟ ଅଳ୍ପ ଅଳ୍ପ କରି ଅଧିକଥର ଦିଅ।

**କ'ଣ କରିବ ନାହିଁ--**

* ପୁରୁଣା ପରମ୍ପରାକୁ ମାନି ରୋଗୀକୁ ଲହୁଣୀ, ହଳଦୀ ଇତ୍ୟାଦି ଲଗାଇ ଗାଧୋଇ ଦିଅନାହିଁ। ଏହାଦ୍ୱାରା ରୋଗୀକୁ ନିମୋନିଆ ହେବାର ସମ୍ଭାବନା ରହିଥାଏ। ଦେହରୁ କାତି ଛାଡ଼ିବା ପରେ ପଟାସ୍ ପାଣିରେ ଗାଧୋଇଦେଲେ ଭଲ।
* ଅନ୍ୟ ସୁସ୍ଥ ପିଲାକୁ ରୋଗୀ ସହିତ ମିଳାମିଶା କରିବାକୁ ଦିଅନାହିଁ କିମ୍ବା ରୋଗୀ ବ୍ୟବହାର କରୁଥିବା ଆସବାବପତ୍ରର ସଂସ୍ପର୍ଶରେ ଆସିବାକୁ ଦିଅନାହିଁ।
* ରୋଗୀକୁ କୌଣସି ଖାଦ୍ୟ ଖାଇବାକୁ ବାରଣ କରନାହିଁ। ଅନେକ ଲୋକ ମିଳିମିଳା ରୋଗୀକୁ ଆମିଷ ଖାଦ୍ୟ ଖାଇବାକୁ ବାରଣ କରିଥାନ୍ତି। ଏହାର କୌଣସି ଅର୍ଥ ନାହିଁ। ବରଂ ରୋଗୀକୁ ଉତ୍ତମ ପୁଷ୍ଟିକର ଖାଦ୍ୟ ଦେବା ନିହାତି ଜରୁରୀ।
* ଅନ୍ଧବିଶ୍ୱାସକୁ ପ୍ରଶୟ ଦିଅନାହିଁ। ଅନେକ ଭାବନ୍ତି- ମିଳିମିଳା ରୋଗ ଦେବୀଙ୍କ କୋପରୁ ହୋଇଥାଏ। ତେଣୁ ସେମାନେ ଏଥିପାଇଁ ଡାକ୍ତରୀ ଚିକିତ୍ସା ନ କରି ପଣାପାଣି ଦେଇ ପୂଜାଅର୍ଚ୍ଚନା କରିଥାନ୍ତି। ଏପରି କରିବାକୁ ଦିଅନାହିଁ। ସବୁବେଳେ ମନେରଖ ଯେ ଏହା ଏକ ଭୂତାଣୁଜନିତ ସଂକ୍ରାମକ ରୋଗ ଓ ଦେବଦେବୀଙ୍କ କୋପ ସହିତ ଏହାର କୌଣସି ସମ୍ପର୍କ ନାହିଁ।



**ପ୍ରତିଷେଧକ--** ଥରେ ମିଳିମିଳା ରୋଗ ହେଲେ ସାରା ଜୀବନ ପାଇଁ ରୋଗ ପ୍ରତିରୋଧକ ଶକ୍ତି ସୃଷ୍ଟି ହୋଇଥାଏ ଓ ଆଉ କେବେ ଏହି ରୋଗ ହୁଏନାହିଁ । ତେବେ ପିଲାମାନଙ୍କୁ ରୋଗ ପ୍ରତିଷେଧକ ଟିକା ଦେଇଦେବା ହିଁ ଏହି ରୋଗର ପ୍ରତିକାର ପାଇଁ ଏକମାତ୍ର ପନ୍ଥା । ପିଲାକୁ ନଅ ମାସ ପୂରିଯିବା ପରେ ଏହି ଟିକାର ଗୋଟିଏ ମାତ୍ରା ଦିଆଯାଏ । ପୁଣି ପିଲାକୁ ଦେଢ଼ବର୍ଷ ହେବା ପରେ ଆଉ ଗୋଟିଏ ମାତ୍ରା ଦିଆଯାଏ । ଏହାଦ୍ୱାରା ସାରା ଜୀବନ ପାଇଁ ଆଉ ମିଳିମିଳା ହେବାର ସମ୍ଭାବନା ରହେନାହିଁ । ତାହା ଛଡ଼ା ମିଳିମିଳା ଭୋଗୁଥିବା ସମୟରେ ପିଲାକୁ ଉଚ୍ଚ ମାତ୍ରାର ଭିଟାମିନ୍ 'ଏ' ମଧ୍ୟ ଦିଆଯାଏ । ଏହା ପିଲାର ପୁଷ୍ଟିହୀନତା ଓ ତରଳ ଝାଡ଼ାକୁ ନିୟନ୍ତ୍ରଣ କରିଥାଏ । ଯେଉଁ ସୁସ୍ଥପିଲା ମିଳିମିଳା ଭୋଗୁଥିବା ପିଲାର ସଂସ୍ପର୍ଶରେ ଆସେ, ତାକୁ ପାଞ୍ଚଦିନ ଭିତରେ ଗାମା ଗ୍ଲୋବୁଲିନ୍ ଇଂଜେକ୍‌ସନ୍ ଦେଇଦେଲେ ଏହି ରୋଗ ହେବାର ସମ୍ଭାବନା କମିଯାଇଥାଏ । ଏହା ପିଲାକୁ ପ୍ରାୟ ଚାରି ସପ୍ତାହ ପର୍ଯ୍ୟନ୍ତ ରକ୍ଷା କରିଥାଏ ।

*'ନିମନ୍ତ୍ରଣ', ୮୯, ଶକ୍ତିନଗର, ଲିଙ୍କ୍ ରୋଡ୍, କଟକ- ୧୨*

---



କୋଷ୍ଟାରିକାଠାରେ ଏକପ୍ରକାର ଉଦ୍ଭିଦ ଦେଖାଯାଆନ୍ତି, ଯାହାର ଚେର ସବୁ ଚାରିପଟୁ ଛୋଟ ଛୋଟ ପାଚେରୀ ପରି ଗଛର ମୂଳକୁ ବାନ୍ଧି ରଖିଥାଏ । ଏହି ମୂଳକୁ ବଟ୍ରେସ୍ ମୂଳ (Buttres Tree Roots) କହନ୍ତି । ଏହିପରି ଗୋଟିଏ ଗଛ କଲିକତାର ଆଲିପୁରଠାରେ ଥିବା ଜାତୀୟ ପୁସ୍ତକାଗାର ପରିସରରେ ଦେଖିବାକୁ ମିଳେ ।



# ଭଲ ଚାହେଁ

ଶ୍ରୀ ରବୀନ୍ଦ୍ର କୁମାର ସାହୁ

ଟିକି ମୁହିଁ ସବୁ ମୋତେ ଲାଗେ ନୂଆ ନୂଆ
ମନ ଡାକେ ଦେଖିବାକୁ ଭଲ ଲାଗେ ଯାହା ।
ଚାହେଁନାହିଁ କେଭେ ଆଖି ବୁଜି ବସିବାକୁ
ଇଚ୍ଛା ସଦା ନୂଆ ଦେଖିବାକୁ, ଜାଣିବାକୁ ।
ପଢ଼ିବାକୁ ମୁଁ ତ କେବେ ମନା କରୁନାହିଁ
ପଢ଼ିବାକୁ ସଦା ମୋର ମନ ଯାଏ ଧାଇଁ ।
ଯାହା ମୁଁ ଇଚ୍ଛା କରୁଛି ପଢ଼ି ପାରୁନାହିଁ
ପଢ଼ିବାକୁ ହୁଏ ଯାହା ଭଲ ଲାଗୁନାହିଁ ।
ଖାଇବାକୁ ପାଇଯାଏ ଯାହା କରେ ଅଳି
ଚାହୁଁଥିବା ବହି କିଆଁ ଯାଏନାହିଁ ମିଳି ?
ବହି ମଝିରେ ମତେ ଦିଅନ୍ତେ କି ଛାଡ଼ି !
ପଢ଼ି ମୁଁ ଯାଆନ୍ତି ଭଲ ଭଲ ବହି ଲୋଡ଼ି ।
ଆକଟ ଦିଅଇ କଷ୍ଟ ମନ ଯାଏ ମରି
'ଯା'କୁ ପଢ଼, ତାକୁ ନୁହଁ କଷ୍ଟ ଦିଏ ଭାରି ।
ଯେଉଁ ବହି ପଢ଼ିବାକୁ ମନ ଡାକୁନାହିଁ
କାହିଁକି କଷ୍ଟ ସହିବି ତାକୁ ବୋହି ବୋହି ?
ଭଲ ବହି ବାଛି ବାଛି ଦେଉନାହଁ କିଆଁ ?
ଆମ ଭଲରେ ସୁନ୍ଦର ହୁଅନ୍ତା ଦୁନିଆ ।

କୁମ୍ଭୀରଗଡ଼ିଆ, ଯାଜପୁର

**

---

**ଅଛି-ନାହିଁ**--ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୬ ଟି ପ୍ରଭେଦ ଅଛି । ବାହାର କରନ୍ତୁ ତ ।

(ଉତ୍ତର ୫୧ ପୃଷ୍ଠାରେ)



# କଂସାଏ ବାସି ଭାତ

ଶ୍ରୀମତୀ ଚନ୍ଦ୍ରିକା ପଣ୍ଡା

ମଣି ଜଣେ ଦିନ ମଜୁରିଆ ଥିଲା। ଦିନରାତି ପରିଶ୍ରମ କଲେ ବି ତାର ଚଳିବା ପାଇଁ ଯଥେଷ୍ଟ ହେଉ ନ ଥିଲା। ଶେଷକୁ ଦିନେ ସିଏ ତାର ସ୍ତ୍ରୀ ହାତରେ ଦଶଟଙ୍କା ଦେଇ କହିଲା, "ଏଇ ଦଶଟଙ୍କା ରଖ, ଏ ବର୍ଷର ଶେଷ ରୋଜଗାର। ରାସ୍ତା କାମ ସରିଗଲା। ପୁଣି ଖରାଦିନ ହେଲେ ଯାହା କାମ ମିଳିବ, ମୁଁ ଖାଲିଟାରେ ବସିବି କାହିଁକି? କାଲି ସକାଳୁ ସହରକୁ ଚାଲିଯିବି। ସେଠି ଯାହା କାମ ମିଳିବ।"

ତା' ପରଦିନ ସକାଳୁ ସକାଳୁ ମଣି ସହରକୁ ବାହାରିଲା। ଘରେ ତ କିଛି ନ ଥିଲା ଖାଇବା ପାଇଁ। କଂସାଏ ବାସି ଭାତ ତା' ସ୍ତ୍ରୀ ଗାମୁଛାରେ ବାନ୍ଧିଦେଲା। ସିଏ ଚାଲିଗଲା, ଯାଉ ଯାଉ ସୂର୍ଯ୍ୟ ମୁଣ୍ଡ ଉପରେ ଉଠିଲେ। ମଣି ଥକି ଯାଇଥାଏ। ଆଗରେ ଝଙ୍କାଳିଆ ବରଗଛଟିଏ ଦେଖି ତାରି ତଳେ ଟିକେ ବିଶ୍ରାମ ନେବାକୁ ଭାବିଲା। ଗାମୁଛାଟି ଗୋଟିଏ ଡାଳରେ ବାନ୍ଧି ସେଇଠି ଶୋଇ ପଡ଼ିଲା।

ଯୋଗକୁ ସେହି ଗଛରେ ବଣର ଭୂତମାନେ ରହୁଥାନ୍ତି। ସେମାନେ ମଣିକୁ ଦେଖି କୁହାକୁହି ହେଲେ, "ଦେଖ ଏ ଗଛମୂଳରେ ଲୋକଟିଏ ଶୋଇଛି।" ଆଉ ଜଣେ କହିଲା, "ତା ଖାଇବା ଜିନିଷ ବି ଗଛ ଡାଳରେ ଟାଙ୍ଗିଛି।" ତୃତୀୟ ଭୂତ କହିଲା, "ଜାଣିଛ ନା ! ତା ଖାଇବାରୁ ବାସି ଭାତ ବାସ୍ନା ହେଉଛି।" ବାସି ଭାତ ଶୁଣି ସମସ୍ତଙ୍କ ପାଟିରୁ ନାଳ ବୋହିଗଲା। ଜିଭ ଚାଟୁ ଚାଟୁ ସେମାନେ ଟିକେ ବି ଅପେକ୍ଷା ନ କରି ଗାମୁଛା ଖୋଲି ଭାତ ଉପରେ ଝାମ୍ପି ପଡ଼ିଲେ। "ଆହା କେତେ ବର୍ଷ ପରେ ବାସି ଭାତ ଗଣ୍ଡେ ପାଟିରେ ପଡ଼ିଲା। ନହେଲେ ତ ପାଟି ଜଙ୍ଗଲି ଫଳ ଓ ମହୁ ଖାଇ ଚିଟା ଧରି ଯାଇଥିଲା।" ଭାତର ବାସି ବାସ୍ନା ପାଇଁ ଆହୁରି ସୁଆଦିଆ ଲାଗୁଛି।" ଏମିତି କଥାବାର୍ତ୍ତା ହେଉ ହେଉ ସମସ୍ତେ ମିଶି ମଣିର ଭାତଗଣ୍ଡାକ ଚାଟିଦେଲେ। ଖାଇସାରି ଏଉଡ଼ି ମାରି କହିଲେ, "କେତେଦିନ ପରେ ଏମିତି ବଢ଼ିଆ ଖାଦ୍ୟ ପେଟରେ ପଡ଼ିଲା। ଯେଉଁ ଲୋକଟି ଗଛ ତଳେ ଶୋଇଛି, ତା' ଯୋଗୁଁ ସିନା ଏ ଖାଇବା ମିଳିଲା। ଖାଇବା ବଦଳରେ ଆମର ବି ତା ପାଇଁ କିଛି କରିବା ଦରକାର।"



କିଛି ବେଳ ପରେ ମଣିର ନିଦ ଭାଙ୍ଗିଲା। ନିଦ ଭାଙ୍ଗୁ ଭାଙ୍ଗୁ ଗାମୁଛାକୁ ଚାହିଁଲା। ଖାଲି ଗାମୁଛା ଦେଖି ତା' ହାଲୁକ ଶୁଖିଗଲା। କାନ୍ଦ କାନ୍ଦ ହୋଇ କହିଲା, "ହେ ଭଗବାନ ! ମୋ ଭାତଗଣ୍ଡାକ କିଏ ନେଇଗଲା ? ମୁଁ ଏବେ କ'ଣ କରିବି ?" ବ୍ୟସ୍ତ ହେଉ ହେଉ ମଣି ଦେଖିଲା ତଳେ ଚାରିଟା କାଠ ଗିନା ପଡ଼ିଛି। ଖାଲି ଗିନା ଦେଖି ମଣିକୁ ବହୁତ ରାଗ ଲାଗିଲା। ସିଏ ଗିନାଗୁଡ଼ାକ ତଳେ କଚିଦେଲା; କିନ୍ତୁ ଇଏ କ'ଣ ? ଗିନାରୁ ବାହାରିଲେ ଚାରିଜଣ ସୁନ୍ଦରୀ ସ୍ତ୍ରୀ। ସମସ୍ତେ ହାତରେ ଧରିଥାନ୍ତି

ଗରମ ଗରମ ଖାଦ୍ୟ। ସେମାନେ କହିଲେ, "ତୁମ ଭାତ ଜଙ୍ଗଲ ଭୂତମାନେ ଖାଇଦେଇଛନ୍ତି। ବଦଳରେ ଏ ଚାରିଟା ଗିନା ଦେଇଛନ୍ତି। ତାକୁ ତୁମେ ଯେତେବେଳେ ବି ତଳେ କଚିଦେବ, ଆମେ ଆସି ଭଲ ଭଲ ଖାଦ୍ୟ ପରଷିଦେବୁ।" ସତକୁ ସତ ବି ସେମାନେ ମଣି ପାଇଁ ବିଭିନ୍ନ ରକମର ଖାଦ୍ୟ ପରଷିଦେଲେ। ପେଟ ଭର୍ତ୍ତି କରି ଖାଉ ଖାଉ ମଣି କହିଲା, "ଏମିତି ଖାଇବା ଅଛି ବୋଲି ମୁଁ ଜାଣି ନ ଥିଲି। ମତେ ନିଜକୁ ଜଣେ ରାଜା ପରି ଲାଗୁଛି।"

ଆଉ ସହରକୁ ଯିବ କ'ଣ, ଗିନାତକ ଗାମୁଛାରେ ବାନ୍ଧି ମଣି ଗାଁ' ମୁହାଁ ହେଲା। ଘରେ ପହଞ୍ଚି ସ୍ତ୍ରୀ ଆଗରେ ଯେତେବେଳେ ସବୁକଥା କହିଗଲା, ସ୍ତ୍ରୀ ଆଗ କହି ପକାଇଲା, "ଭଗବାନ ଆମ ଉପରେ ପ୍ରସନ୍ନ ହୋଇଛନ୍ତି। ଚାଲ ଆମେ ଗାଁ'ର ସମସ୍ତଙ୍କୁ ଡାକି ଖାଇବାକୁ ଦେବା।" ତା' କଥାରେ ରାଜି ହୋଇ ମଣି ବୁଲି ବୁଲି ଗାଁ'ର ସମସ୍ତଙ୍କୁ ନିମନ୍ତ୍ରଣ କରି ଆସିଲା। ଗାଁ ଲୋକେ ଖୁସି ହେବେ କ'ଣ ନିଜ ଭିତରେ ହସାହସି ହେଲେ, "ନିଜେ ଗୋଟେ ଭିକାରୀ, ପୁଣି ଗାଁ ସାରା ଲୋକଙ୍କୁ ଖାଇବାକୁ ଦେବ ? ହଉ ଡାକିଛି ଯେତେବେଳେ ଘରୁ ଭଲ କରି ଖାଇପିଇ ଯିବା।"

ଭୋଜି ଦିନ ସମସ୍ତେ ଧାଡ଼ି ହୋଇ ବସିଲେ। ମଣି ତା' ଗିନା ଚାରିଟି ଧରି ଯେତେବେଳେ ଆସିଲା, ଗାଁ ବାଲା ନିଜ ଭିତରେ ଚୁପ୍‌ଚାପ୍ ହେଲେ, "ମୋଟେ ଚାରିଟି ଗିନା। ସେଥିରେ ପୁଣି ଏତେ ସାନ ସାନ; ଇଏ କ'ଣ ଖାଇବାକୁ ଦେବ ?"

ମଣି ଗିନା ସବୁ ଛେଚିଦେଇ କହିଲା, "ସ୍ୱର୍ଗର ଦେବୀମାନେ ଆସନ୍ତୁ। ଆପଣଙ୍କ ଭଣ୍ଡାରରୁ କିଛି ଦେଇଯାଆନ୍ତୁ।" ମଣି ପାଟିରୁ କଥା ସରିଛି କି ନାହିଁ ଚାରି ପରୀ ଆସି ସମସ୍ତଙ୍କୁ ପରଷି ଦେଲେ। ସମସ୍ତେ ଆନନ୍ଦରେ ପେଟପୂରା ଖାଇ ଯିଏ ଯାହା ଘରକୁ ଗଲେ।

ମଣିଘର ଭୋଜି କଥା ଚାରିଆଡ଼େ ବ୍ୟାପିଗଲା। ଶେଷରେ କଥାଟା ଯାଇ ପଡ଼ିଲା ମୁଥୁରମଣ କାନରେ। ମୁଥୁରମଣ ଗାଁ'ର ସବୁଠୁ ଧନୀ ଲୋକ। ମଣିକୁ ମିଳିଥିବା ଗିନା ବିଷୟ ଶୁଣି ସେ ତା' ଘରକୁ ପ୍ରକୃତ ଘଟଣା ଦେଖିବାକୁ ଆସିଲେ। ମଣିର ସ୍ତ୍ରୀ କହିଲା, "ମୁଥୁରମଣ ଆସିଛନ୍ତି ଯେତେବେଳେ, ତାଙ୍କୁ ଖାଇବାକୁ ଡାକ।" ସ୍ତ୍ରୀ କଥା ମାନି ମଣି ମୁଥୁରମଣଙ୍କୁ ଖାଇକରି ଯିବାକୁ ଅନୁରୋଧ କଲା ଓ ତାଙ୍କ ଆଗରେ ସେଇ ଚାରିଜଣ ସୁନ୍ଦରୀ ସ୍ତ୍ରୀ ଖାଦ୍ୟ ପରଶିଦେଲେ। ଏତେ ସୁସ୍ୱାଦୁ ଖାଦ୍ୟ ମୁଥୁରମଣ ବି କେବେ ଜୀବନରେ ଖାଇ ନ ଥିଲେ। ଖିଆପିଆ ସରିବା ପରେ ମୁଥୁରମଣ ଏ ଗିନାଗୁଡ଼ିକର ରହସ୍ୟ ପଚାରି ବସିଲେ। ମଣି ତ ଅତି ସରଳ, କିଛି ନ ଲୁଚାଇ ବାସି ଭାତଠାରୁ ଆରମ୍ଭ କରି ଜଙ୍ଗଲ ଭୂତ ପର୍ଯ୍ୟନ୍ତ ସବୁ କଥା ଟିକନିଖି କହିଗଲା।

ମୁଥୁରମଣ କି ଆଉ ଅପେକ୍ଷା କରନ୍ତେ ! ଘରେ ଅନେକ ରକମର ମିଠା, ପିଠା, ତରକାରି ରାନ୍ଧି ନିଜେ ପାଲିଙ୍କିରେ ବସି ସେଇ ବରଗଛ ପାଖକୁ ଗଲେ। ମନେ ମନେ ଚିନ୍ତା କରୁଥାନ୍ତି-- ମଣିର ବାସିଭାତ ଖାଇ ଯଦି ଭୂତମାନେ ତାକୁ ଏତେ ବଡ଼ିଆ ଉପହାର ଦେଲେ, ମୋର ଏତେ ଖାଦ୍ୟ ଦେଖି ମତେ କଣ ନ ଦେବେ ?

ଗଛତଳେ ଖାଇବା ଜିନିଷସବୁ ସଜାଡ଼ି ରଖିଦେଇ ଚାକରମାନେ ଖଟ ପକାଇ ନରମ ବିଛଣା ବିଛାଇ-ଦେଲେ। ମୁଥୁରମଣ ସେମାନଙ୍କୁ ବେଳବୁଡ଼ୁ ଆସିବା ପାଇଁ କହି ବିଦା କରିଦେଲେ ଓ ନିଜେ ଖଟରେ ଗଡ଼ି ପଡ଼ିଲେ। ବିଛଣା ଉପରେ ପଡୁ ପଡୁ ନିଦ ହୋଇଗଲା। ଯେତେବେଳେ ତାଙ୍କର ନିଦ ଭାଙ୍ଗିଲା, ଚାରିଆଡ଼େ ଚାହିଁ

ଦେଖିଲେ ଗିନା ତ ନାହିଁ, ଖାଲି ବଙ୍କାତେଢ଼ା ହାଣ୍ଡି ଚାରୋଟି ରହିଛି। ତାକୁ ନେଇ ଘରକୁ ଫେରିଲାବେଳେ ମୁଥୁରମଣ ଖାଲି ଗୋଟିଏ କଥା ଭାବୁଥାଆନ୍ତି, ଗାଁ' ଲୋକଙ୍କୁ ଖାଇବାକୁ ଡାକିବେ। ମଣି ଅପେକ୍ଷା କେତେ ଅଧିକା ଖାଇବା ଦେବି। ଘରେ ପହଞ୍ଚି ଆଗେ ଗାଁ' ଲୋକଙ୍କ ପାଖକୁ ଭୋଜି ପାଇଁ ନିମନ୍ତ୍ରଣ ପଠାଇଦେଲେ।

ନିମନ୍ତ୍ରଣ ପାଇ ଗାଁ'ଲୋକ ଭାରି ଖୁସି ହୋଇଗଲେ। ଭିକାରୀ ମଣି ଯଦି ଏତେ ବଡ଼ିଆ ଭୋଜି ଦେଇପାରିଲା, ମୁଥୁରମଣ କ'ଣ ଖାଇବାକୁ ଦେବନି ? ଜଣେଅଧେ କହିଲେ-- ଆମେ ଭୋଜିକୁ ଖାଲି ପେଟରେ ଯିବା। ମୁଥୁରମଣ ବି ଗର୍ବରେ ଫାଟି ପଡୁଥାଏ "ଲୋକେ ଦେଖିବେ କେମିତି ଭୋଜି ମୁଁ ଦେଉଛି।"

ଯେତେବେଳେ ଗାଁ'ସାରା ଲୋକ ଆସି ପହଞ୍ଚି-ଗଲେ, ମୁଥୁରମଣ ତାଙ୍କର ହାଣ୍ଡି ଚାରୋଟି କାଢ଼ି କହିଲା, "କୁହୁକ ହାଣ୍ଡିର ପରୀମାନେ ଆସ, ମୋ ଅତିଥିମାନଙ୍କ ଖାଇବା ବାଢ଼ିଦିଅ।"

କିନ୍ତୁ ଇଏ କ'ଣ ? ପରୀମାନଙ୍କ ଜାଗାରେ ଆସି ଠିଆ ହୋଇଗଲେ ଚାରିଜଣ ଭୟଙ୍କର ଲୋକ। ସମସ୍ତଙ୍କ ହାତରେ ଗୋଟିଏ କ୍ଷୁର। ସେମାନେ କହିଲେ, "ଆମେ ହେଲୁ ବାରିକ, ଆମକୁ ଯିଏ ଡାକିବ, ଆମେ ସେ ସମସ୍ତଙ୍କ ମୁଣ୍ଡ ଖିଅର କରିବୁ।" ଏତିକି କହି ମୁହୂର୍ତ୍ତକ ଭିତରେ ସେମାନଙ୍କ ସମସ୍ତଙ୍କ ମୁଣ୍ଡ ଲଣ୍ଡା କରିଦେଲେ। ମୁଥୁରମଣକୁ ବି ଛାଡ଼ିଲେ ନାହିଁ। କୁଣିଆମାନେ ଖାଇବେ କ'ଣ, ମୁଥୁରମଣକୁ ଗାଳି ଦେଇ ଘରକୁ ଫେରିଲେ। ମୁଥୁରମଣ ଯାହା କହିଥିଲା-- ଏମିତି ଭୋଜି ଗାଁ ସାରା କେହି ଭୁଲିବେନି-- ପୂରା ସତ ହୋଇଗଲା।

(ଦକ୍ଷିଣ ଭାରତୀୟ ଲୋକକଥା ଛାୟାରେ)

*ବରମୁଣ୍ଡା, ଭୁବନେଶ୍ୱର* **

# ଡାକି ଡର୍କି ଚଲ୍‌ବୁ ପୁତା

ଶ୍ରୀ ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ

ଆଷାଢ଼ ମାସେ ବଁଧ୍ ପୂର୍‌ଲେ
ଛୁଆ ଖେଲାସି ଝୁରୀ ।
କୁହି ଯାଏସି ପଦମ୍ ପତର
ନିରମଲ୍ ପାଏନ୍ ଝୁରି ।୧।
ବେଁଗ ଗଗାଲେ କଟର୍ କଟ୍‌ର
କୁଇଲି ପଡ୍‌ସି ତୁମ୍ ।
ମୂରୁଖ୍ ହେଲେ ଭଡର୍ ଭଡ଼ର୍
ଗିଆନି ମାର୍‌ସି ଗୁମ୍ ।୨।
ଧନ୍‌କେ ନେଇ ଗରବ୍ କଲେ
କାଏଁଟା ହେବା କହ ?
କୁଏର୍ ନୁହେଁ ଯାଏସି ଗୁରସ୍
ଉପ୍‌ଲେ ଗଲେ ଯହ ।୩।
ଡାକି ଡର୍‌କି ଚଲ୍‌ବୁ ପୁତା
ପାଶ୍‌ରି ହାନିଲାଭ୍ ।
ମୁନୁସ୍ ହେବୁ ଯୁଡ଼ି ପାର୍‌ଲେ
ଅଭାବ ସଁଗେ ଭାବ୍ ।୪।

*ଭାରତୀ କୁଟୀର, ଡୁଙ୍ଗୁରିପାଲି- ୭୬୭୦୨୩, ସୁବର୍ଣ୍ଣପୁର*



# ସୃଷ୍ଟି ହେଲା ଏକ ନୂତନ ସଂଗୀତ

ଇଂ ସଦାନନ୍ଦ ମହାନ୍ତି

ଦିନକର କଥା । ସନ୍ଧ୍ୟା ସମୟ । ଜଣେ ସଂଗୀତଜ୍ଞ ଗୋଟିଏ ଲୋକର ଘର ପାଖ ଦେଇ ଯାଉଥାଆନ୍ତି । ସେତିକିବେଳେ ସେ ଶୁଣିବାକୁ ପାଇଲେ ଜଣେ କେହି ତାଙ୍କର ଗୋଟିଏ ସଂଗୀତ ରଚନାକୁ ଅଭ୍ୟାସ କରୁଛି । କିଛି ମୁହୂର୍ତ୍ତ ପାଇଁ ସେ ସେଠାରେ ଅଟକିଗଲେ । ସେତିକିବେଳେ ଜଣେ ଝିଅର ସ୍ୱର ଶୁଣିବାକୁ ପାଇଲେ । ଝିଅଟି ବଡ଼ପାଟିରେ କହୁଥିଲା "ମୋର ଇଛା ହେଉଛି, ଜଣେ ପ୍ରକୃତ ସଂଗୀତଜ୍ଞଙ୍କଠାରୁ ଏହି ଗୀତଟି ବଜାଇବା ଶୁଣିପାରନ୍ତି, ଯାହାଦ୍ୱାରା ମୁଁ ସେହି ରଚନାଟିକୁ ଭଲ ଭାବେ ଏବଂ ନିର୍ଭୁଲ ଭାବେ ଗାଇପାରନ୍ତି ମୋ ପିଆନୋରେ ।"

ଏହା ଶୁଣିବା ପରେ ସଂଗୀତଜ୍ଞଜଣଙ୍କ ସେ ଘରେ ପ୍ରବେଶ କଲେ । ଦେଖିଲେ ଜଣେ କିଶୋରୀ ଯୁବତୀ ପିଆନୋଟିଏ ଧରି ବସିଛି । ଝିଅଟି ଥିଲା ଦୃଷ୍ଟିହୀନା । ଆଗନ୍ତୁକ ତାକୁ କହିଲେ, "ମୁଁ ତୁମ ପାଇଁ ବଜାଇବି, ତୁମେ ଶୁଣିବ ।" ଏହା କହି ସେ ପିଆନୋ ପାଖେ ବସି ପ୍ରାୟ ଏକଘଣ୍ଟା ଯାଏଁ ବଜାଇଲେ ।

ଝିଅଟି ମନ୍ତ୍ରମୁଗ୍ଧ ହୋଇଗଲା । ସେ ଆଗନ୍ତୁକଙ୍କର ପ୍ରଶଂସାରେ ବିଭୋର ହୋଇଉଠିଲା । ଏହା ସଂଗୀତଜ୍ଞଙ୍କ ମନରେ ଆଲୋଡ଼ନ ସୃଷ୍ଟି କଲା । ସେ ପୁଣି ପିଆନୋ ବଜାଇବା ଆରମ୍ଭ କରିଦେଲେ । ପ୍ରଥମେ ଗୋଧୂଳି, ତା'ପରେ ସଂଧ୍ୟା ହୋଇ ଆସିଲା । କ୍ରମଶଃ ସେ ଘରଟିକୁ ରାତ୍ରିର ଅନ୍ଧକାର ଘେରିବାକୁ ଲାଗିଲା । କିନ୍ତୁ ଧୀରେ ଧୀରେ ଚନ୍ଦ୍ରଙ୍କର ରୂପେଲି କିରଣ ବିଛାଡ଼ି ହୋଇ ପଡ଼ିଲା ସେହି ଘର ଭିତରେ । ଝିଅଟି ଅତ୍ୟନ୍ତ ଆଗ୍ରହ ଓ ଧ୍ୟାନର ସହିତ ଶୁଣୁଥାଏ । ତାହା ଏକ ଅନନ୍ୟ ପ୍ରେରଣା ଭରିଦେଲା ଆଗନ୍ତୁକଙ୍କ ହୃଦୟ ଭିତରେ । ଝିଅଟିର ହୃଦୟଭରା ପ୍ରଶଂସା ଏବଂ ରୂପେଲି ଜହ୍ନ ଆଲୁଅର ଦିବ୍ୟ ଆଭା ସଂଗୀତଜ୍ଞଙ୍କୁ ଏକ ନୂତନ ସଂଗୀତ ସୃଷ୍ଟିର ପ୍ରେରଣା ଦେଲା । ପରେ ତାହା 'ମୁନ୍‌ଲାଇଟ୍ ସୋନାଟା' ନାମରେ ବିଶ୍ୱବିଖ୍ୟାତ ହେଲା । ଏହିପରି ସୃଷ୍ଟି ହେଲା


'ମୁନ୍‌ଲାଇଟ୍ ସୋନାଟା'

ଏକ ନୂତନ ସଂଗୀତ । ଅବଶ୍ୟ ସେ ପ୍ରେରଣା ପାଇଥିଲେ ସେହି ଦୃଷ୍ଟିହୀନା କିଶୋରୀଠାରୁ ।

ସେଦିନ ସେ ଅନନ୍ୟ ସଂଗୀତଜ୍ଞ ଥିଲେ ଲୁଡ୍-ଉଇମ୍ ଭନ୍ ବିଥୋଭେନ୍ --ବିଶ୍ୱବିଖ୍ୟାତ ପିଆନୋ ବାଦକ । ମାତ୍ର ଏଗାର ବର୍ଷ ବୟସରେ ସେ ତାଙ୍କର ସଂଗୀତ ରଚନା ଆରମ୍ଭ କରିଥିଲେ ଏବଂ ଯୁବାବସ୍ଥାରେ ହିଁ ସେ ଏକ ବିଖ୍ୟାତ ପିଆନୋବାଦକ ଏବଂ ସଂଗୀତ ରଚୟିତା ଭାବେ ଖ୍ୟାତିଲାଭ କରିଥିଲେ ।

କାଳକାଳକୁ ତାଙ୍କର ନାମ ସଂଗୀତ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ ।

*ହାଉସିଂ ବୋର୍ଡ କଲୋନୀ, ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩*

---

# ଦୁଇ ଛେଳି କଥା

ଡକ୍ଟର କୃତ୍ତିବାସ ନାୟକ

**ଆମେ ପଢ଼ିଥିଲୁ-**

ଥରେ ଗୋଟିଏ ଦାଢ଼ିଆ ଛେଳି ନଇ ସେପଟେ ଥିବା ଘାସପଡ଼ିଆକୁ ଚରିବାକୁ ଯାଉଥିଲା । ବାଟରେ ଗୋଟିଏ ଛୋଟିଆ ବାଉଁଶ ପୋଲ ପଡ଼େ । ସେ ପୋଲ ଉପରେ କେବଳ ଗୋଟିଏ ଛେଳି ଯାଇପାରିବ । ସେ ତରବର ହୋଇ ପୋଲ ଉପରକୁ ଚାଲିଯାଇ ଦେଖିଲା, ସେପଟରୁ ପେଟୁଆ ଛେଳିଟା ପୋଲ ଉପରକୁ ଉଠିଆସିଛି । ସେ ମନକୁ ମନ ଭାବିଲା-- ପେଟୁଆ ତ ଖାଇ ସାରି ଫେରୁଛି । ତେଣୁ ସେ ପଛକୁ ଫେରିବା ଉଚିତ । ମୁଁ ଭୋକରେ ଅଛି, ତେଣୁ ମୁଁ ଆଗ ଯିବି ।



ଏପଟରୁ ଦାଢ଼ିଆ, ସେପଟରୁ ପେଟୁଆ ଛେଳି ବାଉଁଶ ପୋଲ ଉପରେ ଆଗେଇ ଚାଲିଲେ । ଦୁଇଟାଯାକ ଛେଳି ସାମନାସାମନି ହେଲେ । ପେଟୁଆ ଛେଳି ଆଗ ଯିବାକୁ ଜିଦ୍ ଧରିଲା, ଦାଢ଼ିଆ ଛେଳି ତାକୁ ମାରିବାକୁ ଧମକେଇଲା । ଶେଷରେ ଦୁଇଜଣ ଛେଳି ପରସ୍ପରକୁ ମାରିବା ପାଇଁ ଆଗ ଗୋଡ଼ ଟେକି ଠିଆ ହୋଇ ପଡ଼ିଲେ । ତା'ପରେ ଦୁହେଁଯାକ ଭାରସାମ୍ୟ ରକ୍ଷା କରି ନ ପାରି ନଇ ମଝିରେ ପଡ଼ି ଭାସିଗଲେ ।

**ତା'ପରେ କ'ଣ ହେଲା ?**

ଛେଳିଦୁଇଟା ନଇରେ ପଡ଼ିଯିବା ଖବର ପାଇ ତାଙ୍କର ଛୁଆମାନେ ଆସି ପୋଲ ପାଖରେ ପହଞ୍ଚିଲେ । ସେମାନେ କହିଲେ, "ଏ ପୋଲକୁ ଯିଏ ତିଆରି କରିଛି, ସିଏ ହିଁ ଆମ ମା'ଙ୍କର ମୃତ୍ୟୁର କାରଣ । ଯଦି ପୋଲ ତିଆରି ହୋଇ ନ ଥା'ନ୍ତା, ତେବେ ସେମାନେ ନଇ ସେପାରିକୁ ଯାଇ ନ ଥା'ନ୍ତେ, ତେଣୁ ଆଗ ପୋଲକୁ ଭାଙ୍ଗିଦେବାକୁ ହେବ ।"

ଛେଳିଛୁଆଙ୍କ କଥା ଶୁଣିସାରି ବୁଢ଼ା ଛେଳି

କହିଲେ, "ହଇରେ ପିଲେ ! ତମେ ଆଜିକାଲିକା ମଣିଷଙ୍କ ଭଳି କ'ଣ ଏମିତି ଓଲଟା କଥା କହୁଛ ? ଚାଲି ନ ଜାଣି ବାଟର ଦୋଷ ଦେଉଛ। ଅତି ଛୋଟ କଥାକୁ ଆମେମାନେ ଜିଦ୍ କରି ନିଜର ସର୍ବନାଶ କରିଥାଉ। ଭଲ କାମରେ ଜିଦ୍ କଲେ ନିଜର ତଥା ଅନ୍ୟର ଭଲ ହୋଇଥାଏ। ତମେ ଆଗ ନିଜେ ଚାଲିବା ଶିଖ। ଅନ୍ୟକୁ ଚାଲିବାକୁ ସୁଯୋଗ ଦିଅ । ତେବେ ଯାଇ ସମସ୍ତେ ଭଲରେ ରହିପାରିବ। ପରଦୋଷ ଦେଲେ ନିଜର କ୍ଷତି କରିବା ସାରହୁଏ । ମଣିଷ ଆମକୁ ଡରୁଆ ପଶୁ କହନ୍ତି। ତମର ଏମିତିକା କାମକୁ ଦେଖିଲେ, ପୁଣି ସେମାନେ ଆମକୁ ବୋକା ଛେଳି ବୋଲି କହିବେ।"

ବୁଢ଼ା ଛେଳିର କଥା ଶୁଣି ଅନ୍ୟ ଛେଳିମାନ ସେଠାରୁ ଚୁପ୍‌ଚାପ୍ ଚାଲିଗଲେ।

*କେନ୍ଦ୍ର ନିର୍ଦ୍ଦେଶକ, ଆକାଶବାଣୀ, ଜୟପୁର, କୋରାପୁଟ* ❋❋




# ଭୁବନେଶ୍ୱର ମହାନଗର ନିଗମ, ଭୁବନେଶ୍ୱର

**ସ୍ୱାୟତ୍ତ ଶାସନ ଦିବସ-୨୦୧୪**

**ପାଳନ ଅବସରରେ ଭୁବନେଶ୍ୱର ମହାନଗର ନିଗମାଞ୍ଚଳବାସୀଙ୍କୁ**

**ଅଭିନନ୍ଦନ ।**

**ଆସନ୍ତୁ ସହରର ବିକାଶ ଧାରାରେ ସାମିଲ୍ ହେବା**

**ଏବଂ**

**ଏକ ଉନ୍ନତ ସହର ଗଢ଼ି ତୋଳିବା**

**ଡା. କ୍ରିଷନ୍ କୁମାର**
କମିଶନର

**ଶ୍ରୀମତୀ କେ. ଶାନ୍ତି**
ଡେପୁଟି ମେୟର୍

**ଶ୍ରୀଯୁକ୍ତ ଅନନ୍ତ ନାରାୟଣ ଜେନା**
ମେୟର୍

**ଏବଂ**

**ସମସ୍ତ କର୍ପୋରେଟର ଓ କର୍ମଚାରୀବୃନ୍ଦ**

**ଭାଗିଦାରୀ ମାଧ୍ୟମରେ ପ୍ରଗତି - ଏକ ସୁନ୍ଦର ଭୁବନେଶ୍ୱର ପାଇଁ**

# ନିମ୍ବ ଓ ଆମ୍ବ

ଶ୍ରୀମତୀ ପ୍ରେମଲତା ଆଚାର୍ଯ୍ୟ

ଖରାଦିନ । ସ୍କୁଲ ଛୁଟି । ଦାଣ୍ଡ ଚାନ୍ଦିନୀରେ ବସି ଗପ ଶୁଣିବା କପୂର, ଅଗୁରଙ୍କର ଗୋଟାଏ ଅଭ୍ୟାସରେ ପଡ଼ିଗଲାଣି । ଖରାବେଳ, ରବିବାର ଦିନ । ଜେଜେମା ଗୋଡ଼ ଲମ୍ବାଇ ବସି ପଡ଼ିଲେ । କହିଲେ-- କି ଗପ କହିବି କୁହ । ଅଗୁର କହିଲା-- ଗୋଟାଏ ଆମ୍ବ ଭଳିଆ ସୁଆଦିଆ କଥା କହିବ । କପୁର କହିଲା, "କାହିଁକି ଜେଜେମା ଗୋଟିଏ ନିମ୍ବ ଭଳିଆ ପିତା ଗପ କୁହନା ।"

ଜେଜେମା କହିଲେ, "ମୁଁ ଦୁଇଜଣଙ୍କ କଳି କଥା କହିବି ।" ପିଲାଏ କହିଲେ, "ଭଲ ମଜା ଲାଗିବା କଥା । କଥା ଆରମ୍ଭ କର ।"

ବହୁତ ଦିନ ତଳର କଥା । ସେତେବେଳେ ସତ୍ୟ ଯୁଗ ଥାଏ । ଜଙ୍ଗଲରେ ଜଣେ ରଷି କୁଟୀରଟିଏ କରି ଥାଆନ୍ତି । ଆଗରେ ସୁନ୍ଦର ତପୋବନଟିଏ । ସେହି ତପୋବନରେ ଋଷି ଦୁଇଟି ଗଛ ପାଖାପାଖି ଲଗେଇ ଥାଆନ୍ତି । ଗୋଟିଏ ନିମ୍ବ, ଅନ୍ୟଟି ଆମ୍ବ । ଆସ୍ତେ ଆସ୍ତେ ଗଛ ଦୁଇଟି ବଡ଼ ହେଲେ । ଶାଖା ପ୍ରଶାଖା ମେଲିଲା । ନିମ୍ବ ଗଛ ଟିକେ ବଡ଼ ହେଲା ଦିନୁ ଋଷି ସବୁବେଳେ ପାଞ୍ଚଟି ଲେଖା ପତ୍ର ଆଣି ଖାଆନ୍ତି । ନିମ୍ବ ଗଛର ମନ ଭାରି ଖୁସି । ସେହିପରି ପୂଜା କଲାବେଳେ ଋଷି ପାଞ୍ଚଟି ପତ୍ର ଲାଗିଥିବା ଆମ୍ବ ଡାଳଟିଏ ଆଣି କଳସରେ ରଖି ପୂଜା କରନ୍ତି । ମୁଣ୍ଡିଆ ମାରନ୍ତି । ଏଥିପାଇଁ ଆମ୍ବ ଗଛ ମନରେ ଭାରି ଗର୍ବ । ସେ ଭାବେ ମୁଁ ଠାକୁରଙ୍କ କାମରେ ଲାଗୁଛି । ଋଷି ମୋତେ ମୁଣ୍ଡିଆ ମାରୁଛନ୍ତି । ଋଷି କିନ୍ତୁ ଏ ଦୁହିଙ୍କ କଥା ଜାଣିପାରନ୍ତି ।

ଏମିତି ତିନି ଚାରି ବର୍ଷ ଗଲା । ନିମ୍ବ ଗଛରେ ନିମ୍ବ ବଉଳ ଓ ଆମ୍ବ ଗଛରେ ଆମ୍ବ ବଉଳ ହେଲା । ଦୁଇ ଗଛର ବଉଳର ମହକରେ ଋଷିଙ୍କ ଆଶ୍ରମଟି ମହକି ଉଠୁଥାଏ । ଦିନେ ଦୁଇପ୍ରହରରେ ଗୋଟିଏ କୋଇଲି ଆମ୍ବ ଗଛରେ ବସି କୁହୁ କୁହୁ ଗୀତ ଗାଇଲା । କିଛି ସମୟ ପରେ ସୂର୍ଯ୍ୟାସ୍ତ ହୋଇଗଲା । କୁଆଟିଏ ନିମ୍ବ ଗଛରେ ବସି କା' କା' ହୋଇ ରଡ଼ି ଛାଡ଼ିଲା । କହୁଥାଏ-- ଆରେ ପିଲାଏ, ଆସ ସାଙ୍ଗ ହୋଇ ବସାକୁ ଫେରିଯିବା ।

ସନ୍ଧ୍ୟା ହୋଇ ଆସିଲା । ଋଷି କମଣ୍ଡଳୁ ଧରି ଝରଣାକୁ ଗାଧୋଇଗଲେ । ଝରଣାରେ ସନ୍ଧ୍ୟା ସାରି ଆସି କୁଟୀରରେ ଜପତପ କରିବେ । ଆମ୍ବ ଗଛଟି ହୋ ହୋ ହୋଇ ହସିଉଠିଲା । କହିଲା--

"କିରେ ନିମ୍ବ, ତୋ ଉପରେ କୁଆଟା ବସି କେତେ ମଧୁରିଆ ସ୍ୱରରେ ଗୀତ ଗାଉଥିଲା ମ।" ନିମ୍ବ ଉତ୍ତର ଦେଲା, "ହଁ ରେ ଆମ୍ବ, ଥଟ୍ଟା ନ କରିବୁ କାହିଁକି ? ଅଡ଼େଇ ଦିନକୁ ବଡ଼େଇ କଥା। ଚାରିମାସିଆ ଗୀତ କୋଇଲିର। ହେଲେ କୁଆ ତ ମୋର ପ୍ରତିଦିନର ସାଥୀ।"

ଆମ୍ବ ଗଛକୁ କଥାଟା ଭାରି ବାଧିଲା। କହିଲା, "ହଇରେ ମୁଁ ବଡ଼େଇ କଥା କହୁଛି। ମୋର ଫଳ, ପତ୍ର, ଛାୟାଠରୁ ଶରୀର ପର୍ଯ୍ୟନ୍ତ ମୁଁ ସବୁ ପରହିତରେ ଅର୍ପଣ କରିଦେଉଛି। ତୋତେ କିଏ ପଚାରେ ନିମ୍ବ ? ଛୋଟ ମୁହଁରେ ବଡ଼ କଥା କହୁଛୁ।" ଆମ୍ବ ଗଛ ରାଗିଯାଇ ଚାହୁଁଥାଏ। ନିମ୍ବର ମନରେ ଟିକେ ହେଲେ ଗର୍ବ ନ ଥାଏ। ସେ କହିଲା, "ଗୁଣ ଚିହ୍ନେ ଗୁଣିଆ । ମୋର ଗୁଣ ତୁ କାହୁଁ ଜାଣିବୁ ? ମୋର ଫୁଲ, ଫଳ, ପତ୍ର, ଛାୟା ଓ ଶରୀରକୁ ଯିଏ ଜାଣିଛି, ସେ କହିପାରିବ, ମୁଁ ଜନହିତକର କାମରେ ଲାଗେ କି ନାହିଁ। ଆଉ ତୁ ଯେଉଁ କଥାକୁ ଥଟ୍ଟା କରୁଛୁ, ତା'ର କର୍କଶ ସ୍ୱର ହିଁ ସୂର୍ଯ୍ୟଙ୍କୁ ଆତଯାତ କରାଏ। ସଂସାରକୁ କର୍ମମୁଖର କରାଏ। ତୁ ଭାବୁଛୁ ମୁଁ ତୋ କଥା ଶୁଣି ମନ ଦୁଃଖ କରିବି ? ଶାନ୍ତି ହିଁ ସର୍ବ ସୁଖଦାୟକ। ତୋ କଥାକୁ ମୋର କିଏ ଧରୁଛି।" ଏହା କହି ନିମ୍ବ ଆନନ୍ଦରେ ଶିରିଶିରି ଗୀତ ଗାଇବାକୁ ଲାଗିଲା।

ଋଷି ଠିଆ ହୋଇ ସବୁ ଶୁଣୁଥିଲେ। ସବୁ ଶୁଣି ସାରିଲା ପରେ ଋଷି କହିଲେ, "ଆରେ ନିମ୍ବ ଆଉ ଆମ୍ବ, ମୁଁ ଭାବିଥିଲି ତୁମେ ପାଖାପାଖି ରହିଲେ ଦୁଇଭାଇ ଭଳି ରହିବ, ହେଲେ ତୁମ ମନରେ କ'ଣ ହିଂସା ପଶିଲାଣି। ମଣିଷଙ୍କ ଭଳି ଅହଂକାରୀ ହେଲଣି। ବୁଝିଲୁ ଆମ୍ବ, ତୋର ସବୁଠାରୁ ବେଶୀ ଅହଂକାର। ତୁ କ'ଣ ଭାବୁଛୁ, ତୁ ଭାରି ଶ୍ରେଷ୍ଠ ଗଛଟାଏ ? ତୋର ଫୁଲ, ଫଳ ଆଦି ସବୁ ଭଲ। କିନ୍ତୁ ନିମ୍ବ ତୋ'ଠାରୁ ଅଧିକ ଜନହିତକର କାମରେ ଲାଗେ। ନିମ୍ବର ସରଳତା ପାଇଁ ସେ ତୋର ବଡ଼ଭାଇ ହୋଇ ରହିବ। ତା' ଦେହରେ ମଳୟ ଛୁଇଁଲେ ସେ ଚନ୍ଦନର ସୁବାସ ପାଇବ। କଳିଯୁଗରେ ସ୍ୱୟଂ ଭଗବାନ ଶଙ୍ଖ, ଚକ୍ର ତା'ଠାରେ ଦେଖାଇ ଜଗନ୍ନାଥ ତିଆରି ହୋଇ ପୂଜା ପାଇବେ। ସେ ସମସ୍ତଙ୍କୁ ସୂଚାଇଦେବ ଯେ ମଧୁର ଓ ଉପର ଚାକଚକ୍ୟ ସର୍ବଶ୍ରେଷ୍ଠ ନୁହେଁ। ସର୍ବଶ୍ରେଷ୍ଠ ହେଉଛି ନିଜର ଗୁଣ ଓ ଚରିତ୍ର।"

ଏକଥା ଶୁଣି ନିମ୍ବ ଗଛଟି ଋଷିଙ୍କୁ ଯୋଡ଼ହସ୍ତ ହୋଇ କହିଲା, "ପ୍ରଭୋ ! ଯୁଗେ ଯୁଗେ ମୁଁ ଏହି ଆଶୀର୍ବାଦ ନେଇ ଜନହିତକର କାମରେ ଦିନ କଟେଇଦିଏ।" ନିମ୍ବ କଥା ଶୁଣି ଆମ୍ବ ଲଜ୍ଜିତ ହୋଇ କହିଲା, "ମୁଁ ଆଜିଠାରୁ ନିମ୍ବକୁ ବଡ଼ଭାଇର ସମ୍ମାନ ଦେବି।" ଏହା ଶୁଣି ଋଷି କହିଲେ, "ତୁମେ ଆନନ୍ଦରେ ରୁହ। ମଣିଷମାନେ ତୁମ ଉପରେ ଯଦି କିଛି ଅତ୍ୟାଚାର କରନ୍ତି, ତେବେ ସେମାନଙ୍କ ଜୀବନ ଦୁଃଖମୟ ହୋଇଯିବ।" ଏହା କହି ଋଷି ଝରଣାକୁ ଗଲେ। ନିମ୍ବ ଓ ଆମ୍ବ ଦୁଇଭାଇ ସେମାନଙ୍କ ବଉଳକୁ ନଚେଇ ନଚେଇ ଗୀତ ଗାଇଲେ।

ଗପଟି କହି ସାରି ଜେଜେମା କହିଲେ, "ଦେଖ ପିଲାମାନେ, ତୁମେ କଳି କରିବ ନାହିଁ କି ଗର୍ବ କରିବ ନାହିଁ। ତା' ହେଲେ ସମସ୍ତେ ତୁମକୁ ଭଲପାଇବେ। ବଡ଼ ମଣିଷ ହେବ।"

ଦୁଇଭାଇ ଦୁହିଁଙ୍କୁ କୁଣ୍ଢେଇ ପକେଇ କହିଲେ-- ଆମେ ଦୁଇଜଣ କେବେ କଳି କରିବାନି। ଜେଜେମା କହିଲେ --

"କପୂର ଅଗୁର କାହା ଭଳିଆ
ସେ ଦୁହେଁ ମୋ ଜଗାବଳିଆ ।"

*ବଳଦେବଜିଉ କଲୋନୀ, ଲେନ୍-୧୨ (କ), ଜଗନ୍ନାଥପୁର, କେନ୍ଦୁଝର*

**




ଶ୍ରୀ ପ୍ରଶାନ୍ତ କୁମାର ଦାଶ

ସ୍ୱର୍ଗପୁରରେ କୁବେର ଅତି ଧନୀ ଥିଲେ। ସେ ତାଙ୍କ ଭଣ୍ଡାରରେ ଅନେକ ଧନରତ୍ନ ସାଇତି ରଖିଥିଲେ। ତାଙ୍କ ଅମାରରେ ପ୍ରଚୁର ପରିମାଣରେ ଖାଦ୍ୟଶସ୍ୟ ଭରପୂର ଥିଲା । ଅନେକ ଧନରତ୍ନର ଅଧିକାରୀ ଥିବା କୁବେର ଅତି ଲୋଭୀ ଓ କୃପଣ ଥିଲେ। ସେ ଆଦୌ ଖାଦ୍ୟଶସ୍ୟଗୁଡ଼ିକ ନଷ୍ଟ କରିବାକୁ ଇଚ୍ଛା କରୁ ନ ଥିଲେ। ଶସ୍ୟଗୁଡ଼ାକ ତଳେ ପଡ଼ିଯାଉଥିଲେ ତାକୁ ସେ ସାଉଁଟି ନେଇ ଭଣ୍ଡାରରେ ସାଇତି ରଖୁଥିଲେ। ସ୍ୱର୍ଗପୁରରେ କୁବେରଙ୍କ ନିକଟରେ ଯେତିକି ଧନ ଥିଲା, ସେପରି ଧନ ତ୍ରିଲୋକରେ ଆଉ କାହା ପାଖରେ ନ ଥିଲା। ଅନେକଗୁଡ଼ିଏ ଧନର ମାଲିକ ହୋଇଥିବାରୁ କୁବେରଙ୍କ ମନରେ ଭାରି ଗର୍ବ ଥିଲା। ସେ ଗର୍ବରେ ଫୁଲି ଉଠୁଥିଲେ, ନିଜକୁ କୃପଣ ବୋଲି ନୁହେଁ, ଏକ ଶ୍ରେଷ୍ଠ ଧନୀ ବ୍ୟକ୍ତି ରୂପେ ନିଜକୁ ଭାବୁଥିଲେ।

ଭଲ ଭୋଜନ ଓ ଦାନଦେବା ଉଦ୍ଦେଶ୍ୟରେ ଏକଦା କୁବେର ଦେବଦେବ ମହାଦେବ ଓ ବିଦ୍ୟାଦାତା ଗଣେଶଙ୍କୁ ନିଜ ଗୃହକୁ ନିମନ୍ତ୍ରଣ କଲେ। ମହାଦେବ କୁବେରଙ୍କ ନିମନ୍ତ୍ରଣକୁ ଗ୍ରହଣ କଲେ ଓ ନିର୍ଦ୍ଦିଷ୍ଟ ଏକ ମଧ୍ୟାହ୍ନ ସମୟରେ କନିଷ୍ଠ ପୁତ୍ର ଗଣେଶଙ୍କୁ ସାଙ୍ଗରେ ଧରି ସ୍ୱର୍ଗପୁରୀରେ ପ୍ରବେଶ କଲେ। କୁବେର ମହାଦେବଙ୍କୁ ପାଖରେ ପାଇ ଖୁସି ହୋଇଗଲେ । ସେ ନିଜର ଆତିଥେୟତା ଦେବା ପୂର୍ବରୁ ମହାପ୍ରଭୁ ଶଙ୍କରଙ୍କର ପଦଧୌତ କରି ପୂଜ୍ୟପୂଜା ପ୍ରଦାନ କରି ପ୍ରଭୁ ଗଜାନନଙ୍କ ସହିତ ଶିବଙ୍କୁ ନିଜ ଗୃହକୁ ପାଛୋଟି ନେଲେ ସସମ୍ମାନ। ନାନାଧାତୁରେ ଖଚିତ ରତ୍ନ ସିଂହାସନ ଉପରେ ଗଣେଶ ଓ ମହାଦେବଙ୍କୁ ନେଇ ବସାଇଲେ। ପ୍ରଥମେ ସେ ସୁମିଷ୍ଟ ପାନୀୟ ପ୍ରଦାନ କଲେ ପିତାପୁତ୍ରଙ୍କୁ ପାନ କରିବା ପାଇଁ । ପାନୀୟ ପିଇ ସାରିବା ପରେ ଆଶୁତୋଷ ଶିବ ସନ୍ତୁଷ୍ଟ ହେଲେ। ମାତ୍ର ଅଳ୍ପ ସମୟ ପରେ ରନ୍ଧା ଯାଇଥିବା ବହୁବିଧ ଅନ୍ନ ଓ ବ୍ୟଞ୍ଜନ ବ୍ୟବସ୍ଥା କରାଗଲା। ଅନ୍ନ ବ୍ୟଞ୍ଜନ ସହିତ ବିଭିନ୍ନ ପ୍ରକାର ସ୍ୱାଦିଷ୍ଟ ଲଡୁ, ଫଳ, ମିଷ୍ଟାନ୍ନ, କ୍ଷୀର, ସର ଓ ଘିଅ ମଧ୍ୟ ପ୍ରସ୍ତୁତ କରାଯାଇଥିଲା। ଭୋଜନକୁ ଦେଖି ଗଣେଶ ଖୁସି ହୋଇଗଲେ। ତାଙ୍କର ସମସ୍ତ ଚିଜ ଦେଖି କ୍ଷୁଧା ବୃଦ୍ଧି ହେଲା। ନାନା ଖାଦ୍ୟପଦାର୍ଥ ବଢ଼ାଗଲା ଭୋଜନ ନିମିତ୍ତ। ଗଣେଶ ନାନା ସ୍ୱାଦିଷ୍ଟ ପଦାର୍ଥର ବାସ୍ନାରେ ଆକର୍ଷିତ ହୋଇ ବ୍ୟସ୍ତ ହେଉଥା'ନ୍ତି। ସେ ଫଳ, ମୂଳ ଓ ଲଡୁ ପ୍ରିୟ ଥିଲେ। ଲାଳସାକୁ ପ୍ରଶମିତ କରି ନ ପାରି ସେ କୁବେରଙ୍କୁ କହିଲେ, "ମହାଭାଗ, ମୋର କ୍ଷୁଧା ଦୁଇଗୁଣ ବଢ଼ିଗଲାଣି, ଭୋଜନ କରିବା ଆଗରୁ ମୋତେ କିଛି ଲଡୁ ଖାଇବାକୁ ଦିଅନ୍ତୁ।" କୁବେର ତତ୍କ୍ଷଣାତ୍ ଦୁଇଟି ଥାଳିରେ ଭରପୂର ହୋଇଥିବା ମିଠା ଲଡୁ ଗଣେଶଙ୍କ ହାତକୁ ବଢ଼ାଇଦେଲେ। ମାତ୍ର ଅଳ୍ପ ସମୟ ମଧ୍ୟରେ ଗଣେଶ ପାତ୍ରରେ ଥିବା ଲଡୁଗୁଡ଼ାକ ଖାଇ ପକାଇଲେ। ମାତ୍ର ଅଳ୍ପ ସମୟ

ମଧ୍ୟରେ ପଂକ୍ତି ଭୋଜନର ଆୟୋଜନ କରାଗଲା। ଗଣେଶ ଭୋଜନ ଆଗରେ ବସି ସବୁ ସ୍ୱାଦିଷ୍ଟ ଅନ୍ନବ୍ୟଞ୍ଜନକୁ ଭୋଜନ କରିବାରେ ଲାଗିପଡ଼ିଲେ। ମାତ୍ର ଅଳ୍ପ ସମୟ ମଧ୍ୟରେ ଗଣେଶ ସବୁ ଅନ୍ନବ୍ୟଞ୍ଜନକୁ ଶେଷ କରିଦେଲେ।

ସବୁ ଖାଦ୍ୟ ଖାଇ ସାରିବା ପରେ ବି ଗଣେଶଙ୍କ ଭୋକ ମେଣ୍ଟିଲା ନାହିଁ। ଅଧା ପେଟରେ ରହି ଗଣେଶ ଆଉ କିଛି ଭୋଜନ କରିବାକୁ ବ୍ୟଗ୍ର ହେଲେ। କହିଲେ, "ମୋ ପାଇଁ ଆଉ କିଛି ଭୋଜନର ବ୍ୟବସ୍ଥା କର।" ଏଣେ ସବୁ ଖାଦ୍ୟପଦାର୍ଥକୁ ଗଣେଶ ଭୋଜନ କରିଦେଇଥିବାରୁ ମହାଦେବ ଖାଦ୍ୟପଦାର୍ଥ ଅଭାବରେ ଉପାସରେ ବସିଥାନ୍ତି। କୁବେର ଏଥର ଅତି ଅଡୁଆରେ ପଡ଼ିଗଲେ। ମହାଧନୀ କୁବେରଙ୍କୁ କିଛି ବୁଦ୍ଧିବାଟ ଦିଶିଲା ନାହିଁ। ସେ ଅତି ଦ୍ୱନ୍ଦ୍ୱରେ ପଡ଼ିଗଲେ। କିପରି ମହାଦେବ ଭୋଜନ କରିବେ, କୁବେର ଚିନ୍ତା କଲେ। ଯଦି ଦେବଦେବ



ମହାଦେବ ଉପାସରେ ଫେରିଯିବେ, ତେବେ କୁବେର ଅତିଥିଙ୍କୁ ନିରାଶରେ ଫେରାଇଦେବା ପାପରେ ଭାଗୀଦାର ହେବେ। ତେଣେ ଗଣେଶ ବି ଭୋକିଲା ଥାଆନ୍ତି। ଧନପତି କୁବେର ଭୟ ଓ ଆଶଙ୍କାରେ ସଦାଶିବ ମହାଦେବଙ୍କ ଶରଣ ପଶିଲେ। ମହାଦେବ କୁବେରଙ୍କୁ ସହାନୁଭୂତି ପ୍ରଦର୍ଶନ କରି କହିଲେ, "ଅନେକ ଧନସମ୍ପତ୍ତିର ଅଧିକାରୀ ହୋଇ ତୁମେ ଅତି ଗର୍ବରେ କାଳାତିପାତ କରୁଛ। ଏଥର ଟିକେ ଗର୍ବକୁ ପରିତ୍ୟାଗ କର। ତୁମ ପାଖରେ ଧନର ଅଭାବ ନାହିଁ, ମାତ୍ର ଶ୍ରଦ୍ଧାଭାବର ଅଭାବ ରହିଛି। ଶ୍ରଦ୍ଧାରେ କିଛି ଧାନକୁ ଭାଜି ସେଇ ଧାନଭଜା ଖଇକୁ ଲମ୍ବୋଦର ଗଣେଶଙ୍କୁ ଖାଇବାକୁ ଦିଅ।"

କୁବେର ଆଉ ବିଳମ୍ବ ନ କରି ଧାନ ଭାଜିବାକୁ ଆଦେଶ ଦେଲେ। ମନରୁ ଗର୍ବକୁ ଦୂରେଇଦେଇ ଶ୍ରଦ୍ଧା ଭାବ ରଖି ଖଇ ମୁଠାଏ ଆଣି ଗଣେଶଙ୍କୁ ଖାଇବାକୁ ଦେଲେ। ଖଇ ମୁଠାଏ ପାଟିରେ ପକାଇ ଗଣେଶ ଶାନ୍ତି ହେଲେ। ପେଟରେ ହାତ ବୁଲାଇ ନିଜର ତୃପ୍ତିକୁ ପ୍ରକାଶ କଲେ। କହିଲେ, "ମହାଭାଗ ମୁଁ ଏଥର ଭୋଜନରେ ତୃପ୍ତ ହେଲି।"

ମନରେ ଗର୍ବ ଓ ଅହଙ୍କାର ରଖି ଅତିଥି ସେବା କଲେ ତାହା ପୁଣ୍ୟକର୍ମରେ ପରିଣତ ହୁଏନାହିଁ। ଶ୍ରଦ୍ଧା ଭାବ ରଖି ଅତିଥି ସେବା କଲେ ପରମ ଧର୍ମ ମିଳେ। ସମର୍ପଣ ଭାବ ଦ୍ୱାରା ହିଁ ଯାହା କିଛି ଅତିଥିଙ୍କୁ ପ୍ରଦାନ କରାଯାଏ, ସେଥିରେ ପରମ ଧର୍ମ ଅର୍ଜନ ହୋଇପାରେ। ଦେବଦେବ ମହାଦେବ ଓ ପରମଜ୍ଞାନୀ ଗଣେଶଙ୍କୁ ନିମନ୍ତ୍ରଣ କରି କୁବେର ଅକୃତକାର୍ଯ୍ୟ ହେଲେ ଓ ତାଙ୍କର ଗର୍ବ ଭାଙ୍ଗି ଚୁରମାର ହୋଇଗଲା। ନିଜର ଭୁଲ ପାଇଁ କୁବେର ଗଣେଶ ଓ ମହାଦେବଙ୍କ ନିକଟରେ ଶରଣ ନେଇ କ୍ଷମା ପ୍ରାର୍ଥନା କଲେ।

*କୁଞ୍ଜର, ସଙ୍ଗଳାଇ, ପିପିଲି*

**



# ସଞ୍ଚୟ କରି ଶିଖ

ଶ୍ରୀ ନଟବର ସାହୁ

ଡେଇଁ ଡେଇଁକା ଝିଣ୍ଟିକାଟିଏ
ଘାସରେ ଖେଳୁଥିଲା
ସେଇ ବାଟରେ ପିମ୍ପୁଡ଼ିଟିଏ
ତରତରେ ଧାଉଁଥିଲା ।
ଆ' ଖେଳିବା ପିମ୍ପୁଡ଼ିଭାଇ
ଝିଣ୍ଟିକା ଡାକି କହେ
କଅଁଳ ଘାସ ଉପର ଦେଇ
ସମୀର ଧୀରେ ବହେ ।
ଫଗୁଣ ମାସ ନରମ ଖରା
ଆହା କି ମଜା ଲାଗେ
ନ ଖେଳି ତୁହି କୁଆଡ଼େ ଯାଉ
ଏଇ ଭଳିଆ ପାଗେ ?
ପିମ୍ପୁଡ଼ି କହେ ଖାଦ୍ୟ ପାଇଁକି
ଧାଉଁଛି କ୍ଷେତବାଡ଼ି
ଏବେ ରଖିଲେ ନ ଥିବ ଚିନ୍ତା
ଆସୁ ବରଷା ବଢ଼ି ।
ଗ୍ରୀଷମ ପରେ ଆସିବ ଧାଇଁ
ଝଡ଼ିବରଷା ଦିନ
ସାଇତି ଥିଲେ ଖୁସିରେ ବସି
ଖାଇବି ରାତିଦିନ ।
ସମୟ କାହିଁ ଖେଳିବା ପାଇଁ
ଯାଉଛି ନିଜ ବାଟେ
ମୋ କଥା ମାନି ସାଉଁଟି ରଖ
ତୋ ଖାଦ୍ୟ ଗୋଟେ ଗୋଟେ ।
ପିମ୍ପୁଡ଼ି କଥା ଶୁଣି ଝିଣ୍ଟିକା
ହସେ ଉଡ଼ାଇଦେଲା
ମୋ ପାଇଁ ଖାଦ୍ୟ ହେବନି ଊଣା
ରହ ଦେଖିବୁ ଭଲା ।
ଗ୍ରୀଷମ ପରେ ବରଷା ଋତୁ
ଆସିଲା ବେଗେ ମାଡ଼ି
ଝଡ଼ି ବରଷା ଲାଗି ରହିଲା
ଗଲାନି କେବେ ଛାଡ଼ି ।
ପିମ୍ପୁଡ଼ି ତାର ସାଇତା ଖାଦ୍ୟ
ଖୁସିରେ ଖାଉଥିଲା
ଝଡ଼ ଦାଉରୁ ଝିଣ୍ଟିକା ଭାଇ
ଭୋକରେ ସଢ଼ୁଥିଲା ।
ପିମ୍ପୁଡ଼ି ପାଖେ ପହଞ୍ଚି ଯାଇ
ମାଗିଲା ଖାଦ୍ୟ କିଛି
ଦୟା ଦେଖାଇ ପିମ୍ପୁଡ଼ି ଦେଲା
ମନରେ ବହୁ ପାଞ୍ଚି ।
ସଞ୍ଚି ନ ଥିଲୁ ଖାଦ୍ୟ କଣିକା
ଭୋକେ କାଟିଲୁ ଦିନ
ରଖିଥା ମନେ ମୋ ପରିକା
ସଞ୍ଚୟ କରି ଜାଣ ।
ଜାଣିଥା ପିଲେ ଏବେଠୁ କିଛି
ସଞ୍ଚୟ କରି ଶିଖ
ନ ହେଲେ ଜାଣ ଝିଣ୍ଟିକା ପରି
ପାଇବ ନିଷ୍ଚେ ଦୁଃଖ ।

ଏଲ୍-୩୮, ବରମୁଣ୍ଡା, ଭୁବନେଶ୍ୱର

**



"ଦଶରଥଙ୍କ ପୁଅ ରାମଚନ୍ଦ୍ର ୧୪ ବର୍ଷ ବଣକୁ ଗଲେ । ତା'ପରେ ତାଙ୍କ ପୁଅକୁ ଝୁରି ଝୁରି ଦଶରଥ ବି ମରିଗଲେ ।"

ବିପୁନ୍‌ର ଆଖି ଛଳ ଛଳ ହୋଇଗଲା । ମୋର ୩ ବର୍ଷର ପୁତୁରାକୁ ତା'ର ମା ଗପ କହୁଥାଏ । ମୁଁ ପାଖରେ ବସି ଶୁଣୁଥାଏ । "ଏଇଟା କହନା, ଆଉ ଗୋଟେ ଭଲ ଗପ କହ ।" କରୁଣ ସ୍ୱରରେ କହିଲା ବିପୁନ୍ । ତା'ପରେ ହିରଣ୍ୟକଶିପୁ ଅସୁର ଆଉ ପ୍ରହଲ୍ଲାଦ ଗପ ଶୁଣିଲା । ଶୁଣି ସାରି କହିଲା, "ମା' ପ୍ରହଲ୍ଲାଦ ତା'ବାପାଙ୍କୁ କ'ଣ ପାଇଁ ମାରିଦେଲା ? ତୁମେ ଆଉ ଗୋଟେ ଗପ କହ ।" ମା' ବ୍ୟସ୍ତ ହେଇଗଲେଣି । କାରଣ ଯେଉଁ ଗପ ଶୁଣିଲେ ବି ପୁଅର ମନ ଦୁଃଖ ।

ଆଉ ଦିନକର ଘଟଣା । ମୁଁ ଟି.ଭି. ଖୋଲିଦେଲା ମାତ୍ରେ ଭାସି ଆସିଲା ସମବେତ କଣ୍ଠ ସଂଗୀତ 'ଉଠ କଙ୍କାଳ, ଛିଡୁ ଶୃଙ୍ଖଳ, ଜାଗ ଦୁର୍ବଳ ଆଜି', ତାହାକୁ ସ୍ୱନାମଧନ୍ୟ ଗାୟିକାମାନେ ଗାଉଥିଲେ । ସେ କଣ୍ଠ ଏତେ କରୁଣ ଥିଲା ଯେ ଓଡ଼ିଶାର ଅତୀତର କଙ୍କାଳମାନଙ୍କୁ ପୁଣି ମାଟି ଭିତରେ ପୋତି ହୋଇଯିବା ପାଇଁ ଉତ୍ସାହିତ କରାଯାଉଛି ପରି ମୋତେ ବୋଧ ହେଲା । ସେ ସଂଗୀତଟିର ମୌଳିକ ସ୍ୱର ଉତ୍ସାହଜନକ । ତାକୁ ପରିବର୍ତ୍ତନ କରି କରୁଣ ସ୍ୱରରେ ଗୀତଟିକୁ ଶ୍ରୁତି-ମଧୁର କରିବା ପାଇଁ ଗାନ କରିବାର ଯଥାର୍ଥତା ମୁଁ ଆଦୌ ଖୋଜି ପାଇଲି ନାହିଁ ।

ବର୍ତ୍ତମାନ ଆମ ସମାଜକୁ ହତାଶା, କରୁଣାର ବାତାବରଣ ଧୀରେ ଧୀରେ ଗ୍ରାସ କରୁଛି ବୋଲି ମନେହେଉଛି । କିନ୍ତୁ ଏହା ନୁହେଁ ଯେ ଏହି ନିରାଶ-ଜନକ ଭାବ ଦ୍ୱାରା ଶିଶୁମାନେ ଆକ୍ରାନ୍ତ ହେବେ-- ଏହା ଅତ୍ୟନ୍ତ ଦୁଃଖାବହ । ସେମାନଙ୍କୁ ଦୁଃଖାବହ ଓ ହତାଶାପୂର୍ଣ୍ଣ ଗଳ୍ପ ବା କବିତା ଶୁଣାଇ ତାଙ୍କ ମନକୁ ଦୁଃଖାଭିଭୂତ କରିବା ସମୀଚୀନ ନୁହେଁ । ଆଜିକାଲି ଶିଶୁ ସାହିତ୍ୟରେ ସେଭଳି ଲେଖା ଦେଖିବାକୁ ମିଳୁଛି । ଶିଶୁର ମନ ଭିତରେ ଯେ ପର୍ଯ୍ୟନ୍ତ କୂଟକପଟ, ଦୁଃଖ, ଯନ୍ତ୍ରଣା ସ୍ପର୍ଶ କରି ନ ଥାଏ, ସେ ପର୍ଯ୍ୟନ୍ତ ସେମାନଙ୍କର ମନ ନିର୍ମଳ ଥାଏ । ତା'ପରେ ସେମାନେ ଧୀରେ ଧୀରେ ବଡ଼ ହେଲା ପରେ ଆମ ପରିବେଶର ଦୂଷିତ, ଚାକଚକ୍ୟପୂର୍ଣ୍ଣ, ଦୁଃଖପୂର୍ଣ୍ଣ ଘଟଣାବଳୀ ତାଙ୍କ ହୃଦୟରେ ପ୍ରବେଶ କରେ-- ସେମାନେ ପରିବର୍ତ୍ତିତ ହୁଅନ୍ତି ।

"ଶୀତ ଦିନରେ ବୁଢ଼ାଟିଏ ରାସ୍ତାରେ ଯାଉଛି, ତା'ଦେହରେ ଚାଦର ନାହିଁ, ସେ ଶୀତରେ ଥରିଯାଉଛି । ତାକୁ ଦେଖି ପିଲାଟିର ହୃଦୟ ଦୟାରେ ପୂର୍ଣ୍ଣ ହୋଇଗଲା ଏବଂ ସେ ଘରୁ ଦୌଡ଼ିଯାଇ ଚାଦରଟିଏ ଆଣି ତାକୁ ଦେଲା । ବାପା, ମା' ଖୁସି ହେଲେ ।"

'ଓଡ଼ିଶା ଏକ ଦରିଦ୍ର ଦେଶ, ଲୋକମାନେ ଖାଇବାକୁ ପାଉନାହାନ୍ତି, ଅଭାବରେ ସଢୁଛନ୍ତି ।" ବାରମ୍ବାର ଏହିଭଳି ଉକ୍ତି ଓ ଉପରୋକ୍ତ ପ୍ରକାରର ଗଳ୍ପ ଓ କବିତା ଲେଖା ମାଧ୍ୟମରେ ସର୍ବଦା ଘୋଷଣା କରିବା ଦ୍ୱାରା ପିଲାମାନେ ଦରିଦ୍ର ଭାବେ ଜନ୍ମ ହେଇଛନ୍ତି ବୋଲି ନିଜକୁ 'ହତଭାଗ୍ୟ' ମନେକରିବାଟା ଅଯୌକ୍ତିକ ନୁହେଁ ।

ଯୁଗ ଅହରହ ପରିବର୍ତ୍ତିତ ହେବାରେ ଲାଗିଛି । ସେହି ଅନୁସାରେ ଶିଶୁର ଚିନ୍ତାଧାରା ଅଗ୍ରସର ହେଉଛି ।

ଆଦର୍ଶ, ନିୟମ କାନୁନ୍, ଶୃଙ୍ଖଳା ଆଦି ବିଷୟରେ ଶିଶୁମାନେ ଗୁରୁଜନମାନଙ୍କଠାରୁ, ବାପା, ମା'ଙ୍କଠାରୁ ପ୍ରାୟ ଶୁଣୁଛନ୍ତି । ପୁଣି ତାକୁ ଗଳ୍ପ ମାଧ୍ୟମରେ ପଢ଼ିବାକୁ ସେମାନେ ଆଉ ଇଚ୍ଛା ନ କରିବା ସ୍ୱାଭାବିକ । ଏଗୁଡ଼ିକ ଆଦୌ ଆନନ୍ଦଦାୟକ ନୁହେଁ । ଏହିପରି ଉପଦେଶପୂର୍ଣ୍ଣ ଲେଖାଯୋଗୁଁ ହୁଏତ ଶିଶୁ ସାହିତ୍ୟିକମାନେ ନାନା ଅନୁଷ୍ଠାନ ଦ୍ୱାରା ସମ୍ମାନିତ ହୋଇପାରନ୍ତି, ମାତ୍ର ଶିଶୁମାନଙ୍କଠାରୁ ସମ୍ମାନ ପାଇବାକୁ ହେଲେ ଉତ୍ସାହଜନକ ଗଳ୍ପ, ରୋମାଞ୍ଚକାରୀ ଗଳ୍ପ, ପଶୁପକ୍ଷୀ ଗଳ୍ପ, ହାସ୍ୟ ଉଦ୍ରେକକାରୀ ମଜାଗଳ୍ପ ଓ ବିଜ୍ଞାନ ସମ୍ବନ୍ଧୀୟ ମୌଳିକ ଶିଶୁ ଗଳ୍ପ ଲେଖିବା ଆବଶ୍ୟକ, ଯାହାକି ଧୀରେ ଧୀରେ ଶିଶୁ ସାହିତ୍ୟ ଜଗତରୁ ଉଭେଇ ଯାଉଛି ।

ଆଜିର ଯୁବ ପିଢ଼ିର ଲେଖକମାନେ ଶିଶୁମାନଙ୍କୁ ନୂଆ ଜଗତ ଦେଖାଇବା ପାଇଁ ଉତ୍ସାହିତ ହୁଅନ୍ତୁ । ସେମାନେ ନିଜକୁ 'ସମ୍ମାନିତ' କରିବାର ବ୍ୟାଧିରୁ ରକ୍ଷା କରି, ସେଥିରେ ସମୟ ଉପଯୋଗ ନ କରି ଶିଶୁମାନଙ୍କ ଚିନ୍ତାଧାରାକୁ ବୁଝିବାରେ ସମୟ ଉପଯୋଗ କରନ୍ତୁ । ତା'ହେଲେ ଶିଶୁମାନଙ୍କର ମୁଖମଣ୍ଡଳରେ ଭବିଷ୍ୟତର ସୂର୍ଯ୍ୟ ପ୍ରତିଫଳିତ ହେବ । (ପୁରୁଣା ସଂସାର ପୃଷ୍ଠାରୁ)

-- ଅନସୂୟା ନନ୍ଦ

## ତୁ ହଇରାଣ ହେବୁ.....

*ବାପାଙ୍କର ମୃତ୍ୟୁ ପରେ ପୁଅ ମା'ଙ୍କୁ ବୃଦ୍ଧାଶ୍ରମରେ ଛାଡ଼ିଦେଲେ ଏବଂ ମଝିରେ ମଝିରେ ଯାଇ ତାଙ୍କୁ ଦେଖିଆସନ୍ତି ।*

*ଥରେ ବୃଦ୍ଧାଶ୍ରମରୁ ପୁଅ ପାଖୁ ଚିଠି ଗଲା ଯେ, ''ତୁମର ମା'ଙ୍କ ଅବସ୍ଥା ସାଂଘାତିକ । ଦେଖିଯାଅ ।'' ପୁଅ ଆସି ମା'ଙ୍କୁ ଦେଖିଲା ଯେ ତାଙ୍କର ମୃତ୍ୟୁ ସମୟ ପାଖେଇ ଆସିଲାଣି । ସେ ପଚାରିଲା-- ମା', ତୁମର ଶେଷ ଇଚ୍ଛା କ'ଣ କୁହ, ଯାହା ମୁଁ ପୂରଣ କରିବା ପାଇଁ ଚେଷ୍ଟା କରିବି ।''*

*ମା' କହିଲେ, ''ଦୟାକରି ଗୋଟିଏ ଛାତପଙ୍ଖା ଲଗେଇଦେ । ଏଠି ଜମା ପଙ୍ଖା ନାହିଁ ।''*

*ପୁଅ ଆଶ୍ଚର୍ଯ୍ୟ ହେଇ ପଚାରିଲା, ''ମା' ତୁମେ ତ ଏତେ ବର୍ଷ ଏଠି ରହିଲ, ଅଥଚ ଦିନେ ତ ମତେ ଜଣେଇନ ! ଏବେ ତୁମର ମୃତ୍ୟୁର ଅଳ୍ପ ସମୟ ପୂର୍ବରୁ ତମର ପଙ୍ଖା କାହିଁକି ଦରକାର ହେଉଛି?''*

*ମା' ବହୁତ କଷ୍ଟରେ ହସି କହିଲେ, ''ନାଇଁରେ, ମୁଁ ତ ପଙ୍ଖା ବିନା ଗରମରେ ଚଳିଯାଉଥିଲି । କିନ୍ତୁ ଭୟ ହେଉଛି ଯେ ତୁ ଯେବେ ଏଠି ରହିବୁ, ଏ ଗରମ ସମ୍ଭାଳି ପାରିବୁନି । ସେଇଥିପାଇଁ କହିଲି ।''* **

## ଅଭିଓ ମାଝିଁ



# ପ୍ରିୟଦର୍ଶିନୀ ଅପରାଜିତା

ପିଲାଦିନେ ସେ ଗାୟିକା ହେବା ପାଇଁ ଚିନ୍ତା କରିଥିଲେ, ସ୍ୱପ୍ନ ଦେଖିଥିଲେ ମଧ୍ୟ। ତାଙ୍କର ସଂଗୀତ ପ୍ରତି ବେଶ୍ ଦୁର୍ବଳତା ଥିଲା। ସେ ଗୁରୁ ପ୍ରଦୀପ ପାତ୍ରଙ୍କ ନିକଟରୁ ପ୍ରଥମେ ସଂଗୀତ ଶିକ୍ଷା ଆରମ୍ଭ କଲେ। ପରବର୍ତ୍ତୀ ସମୟରେ ଆକାଶବାଣୀ ସମ୍ବଲପୁର କେନ୍ଦ୍ରରୁ କଣ୍ଠଶିଳ୍ପୀର ଯୋଗ୍ୟତା ହାସଲ କରିଥିଲେ।

ମାତ୍ର ଷଷ୍ଠଶ୍ରେଣୀରୁ ସେ ପ୍ରଥମେ 'ଶାମୁକାର ସ୍ୱପ୍ନ' ନାଟକରେ ଅଭିନୟ କରିଥିଲେ। ସ୍କୁଲ ଓ କଲେଜରେ ମଧ୍ୟ ସେ ଅନେକ ଡ୍ରାମାରେ ଅଭିନୟ କରିଥିଲେ। ସେ ଯେ ଜଣେ କୁଶଳୀ କଳାକାର ଭାବରେ ଭବିଷ୍ୟତରେ ସମସ୍ତଙ୍କର ହୃଦୟ ଜିତିପାରିବେ, ଏହା ତାଙ୍କର ହୃଦ୍‌ବୋଧ ହେଲା। କଲେଜର ପ୍ରଥମ ବର୍ଷରେ ଏହ୍ଲାବାଦଠାରେ ସର୍ବଭାରତୀୟ ସ୍ତରରେ ନାଟକ ପ୍ରତିଯୋଗିତାରେ ସେ ଶ୍ରେଷ୍ଠ ନାୟିକା ଭାବେ ପୁରସ୍କୃତ ହୋଇଥିଲେ।

ସୌଖିନୀ ନାଟ୍ୟ ସଂସ୍ଥା ଓ ଶିଳ୍ପୀ ନାଟ୍ୟ ସଂସ୍ଥା ତରଫରୁ ହୋଇଥିବା ଅନେକ ନାଟକରେ ଭାଗ ନେଇ ସେ ସଫଳତା ପାଇଲେ। ସେ ଅଭିନୟର ପାହାଚରେ ପାଦ ଦେଲେ ପ୍ରଥମେ 'ଅସ୍ତରାଗ' ଚଳଚ୍ଚିତ୍ରରେ। ଏହା ସମ୍ବଲପୁର ଶିଳ୍ପୀ ସମବାୟ ସଂସ୍ଥା ତରଫରୁ ନିର୍ମିତ ହୋଇଥିଲା। ଏହାର ନାୟକ ଥିଲେ ଉତ୍ତମ ମହାନ୍ତି। ଯିଏ ତାଙ୍କର ନାମକୁ ସାର୍ଥକ କରବାର ଚେଷ୍ଟାରେ ଅଦ୍ୟାବଧି ଅଛନ୍ତି-- ସେ ହେଉଛନ୍ତି ଆମର ପ୍ରିୟ ଅଭିନେତ୍ରୀ ଅପରାଜିତା। ମହମ୍ମଦ ମହସିନଙ୍କର ନିବେଦିତ 'ଫୁଲ ଚନ୍ଦନ' ତାଙ୍କ ଅଭିନୟରେ ଅଭୂତପୂର୍ବ ସଫଳତା ହାସଲ କଲା। ସେ ଓଡ଼ିଆଙ୍କ ନିକଟରେ ଖୁବ୍ ଶୀଘ୍ର ପରିଚିତ ହୋଇଗଲେ ଏହାପରେ। ଉତ୍ତମ-ଅପରାଜିତା ଯୋଡ଼ିକୁ ଦର୍ଶକମାନେ ଆଦରରେ ଗ୍ରହଣ କଲେ। ୧୯୯୫ ମସିହାରୁ ସେ ମୁଖ୍ୟ ନାୟିକା ନ ହୋଇ ମା, ଭାଉଜ ଓ ବଡ଼ ଭଉଣୀ ଭୂମିକାରେ ଅଭିନୟ କଲେ। ତାଙ୍କର ଉଚ୍ଚକୋଟୀର ଅଭିନୟ ତାଙ୍କୁ ନାୟିକା ଭୂମିକାରେ ଅବତୀର୍ଣ୍ଣ କରାଇଲା। ଯେ କୌଣସି ଚଳଚ୍ଚିତ୍ରରେ ଅଭିନୟ କରିବାର ଦକ୍ଷତା ତାଙ୍କର ରହିଛି। 'ଫୁଲ ଚନ୍ଦନ'ରେ ତାଙ୍କର ଉତ୍ତମ ମହାନ୍ତିଙ୍କ ସହ ହାତଗଣ୍ଠି ପଡ଼ିବାର ଦୃଶ୍ୟ ଶେଷରେ ବାସ୍ତବ ହେଲା ୧୯୮୭ ମସିହା ମେ ୨୪ ତାରିଖରେ। ତାଙ୍କର ପୁତ୍ର ବାବୁସାନ୍ ମଧ୍ୟ ଚଳଚ୍ଚିତ୍ର ଜଗତରେ ପାଦ ଦେଇ ସଫଳତା ଦିଗରେ ଆଗେଇ ଚାଲିଛନ୍ତି।



**ବସ୍ତ୍ର ହରଣର ଏକ ଦୃଶ୍ୟରେ**


ଥୁକୁଲୁର ଏକ ଦୃଶ୍ୟରେ

ଶାନ୍ତନୁ ମିଶ୍ରଙ୍କ ନିବେଦିତ 'ଆଶା' ଓ ହିମାଂଶୁ ଖଟୁଆଙ୍କର ନିବେଦିତ 'ଶୂନ୍ୟ ସ୍ୱରୂପ' ଆଦି କଳାତ୍ମକ ଚଳଚ୍ଚିତ୍ରରେ ଅଭିନୟ କରି ସେ ପୁରସ୍କୃତ ହୋଇଛନ୍ତି।

ଛୋଟ ପରଦାରେ ମଧ୍ୟ ସେ ଅଭିନୟ କରିଛନ୍ତି। 'ଯେ ପକ୍ଷୀ ଉଡ଼େ ଯେତେ ଦୂର', 'ସକାଳର ଅପେକ୍ଷାରେ', 'ପଣତକାନି' ଇତ୍ୟାଦି ଟିଭି ଧାରାବାହିକ ବେଶ ଲୋକପ୍ରିୟତା ହାସଲ କରିପାରିଛି।

ଅପରାଜିତା ମୟୂରଭଞ୍ଜର କରଞ୍ଜିଆଠାରେ ଜାନୁୟାରୀ ୩୧, ୧୯୬୧ ମସିହାରେ ଜନ୍ମଗ୍ରହଣ




କରିଥିଲେ। ତାଙ୍କର ପିତା ହେଉଛନ୍ତି ଅଜିତ ଖାନ୍ ଓ ମାତା ହରପ୍ରିୟା ଦେବୀ। ସେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଛନ୍ତି। ତାଙ୍କର ଅଭିନୀତ ୭୫ଟି ଚଳଚ୍ଚିତ୍ରରୁ ୫୫ଟିରେ ସେ ଉତ୍ତମ ମହାନ୍ତିଙ୍କ ସହ ଅଭିନୟ କରିଛନ୍ତି। ଉତ୍ତମଙ୍କ ବ୍ୟତୀତ ମିହିର ଦାସ, ଅଜିତ ଦାସ, ଅଶ୍ରୁମୋଚନ, ତାପସ ପାଲ, ପ୍ରଶାନ୍ତ ନନ୍ଦ, ଶ୍ରୀରାମ ଦାସ ପ୍ରଭୃତି ନାୟକଙ୍କ ବିପକ୍ଷରେ ମଧ୍ୟ ସେ ଅଭିନୟ କରିଛନ୍ତି।



ଏହା ବ୍ୟତୀତ ସେ 'ଶାସ୍ତି', 'ଯାହାକୁ ରଖିବେ ଅନନ୍ତ', 'ଫୁଲ ଚନ୍ଦନ', 'ମା'ପରି କିଏ ହେବ', 'ତୁଣ୍ଡ ବାଇଦ' ଆଦି ଚଳଚ୍ଚିତ୍ର ପାଇଁ ରାଜ୍ୟ ସରକାରଙ୍କ ଠାରୁ ପୁରସ୍କୃତ ହୋଇଛନ୍ତି। ଚିତ୍ରପୁରୀ, ଚଳଚ୍ଚିତ୍ର ଜଗତ, ବାଣୀଚିତ୍ର ଇତ୍ୟାଦି ଅନୁଷ୍ଠାନରୁ ସେ ମଧ୍ୟ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି। ସେ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ମଧ୍ୟ ଗଢ଼ିଛନ୍ତି ଓ ଗାଁ ଗାଁରେ ବୁଲି ଏଡସ୍ ସଚେତନତା ସୃଷ୍ଟି ପାଇଁ ପ୍ରଚାର କରୁଛନ୍ତି।

ନିକଟରେ ମିହିର ଦାସ ଓ ଅପରାଜିତା ମହାନ୍ତି ଅଭିଷେକ ବେହୁରାଙ୍କର ବିଭିନ୍ନଭାଷୀ ଚଳଚ୍ଚିତ୍ର 'ପାଗଲୁ'ରେ ଅଭିନୟ ପାଇଁ ପ୍ରସ୍ତୁତ ହେଉଛନ୍ତି। ଏହା ଉଭୟ ବଙ୍ଗଳା ଓ ଓଡ଼ିଆରେ ନିର୍ମିତ ହେବ। ଏଥିରେ

ଅପରାଜିତା କଲିକତାର ସଂଗୀତ ଶିକ୍ଷୟିତ୍ରୀ ଭାବେ ଓ ମିହିର ଦାସ ଜଣେ ଖ୍ୟାତନାମା ସଂସ୍ଥାର ସଂଗୀତଜ୍ଞ ଭାବରେ ଅଭିନୟ କରିବେ । ଆସନ୍ତା ବର୍ଷ ସେପ୍‌ଟେମ୍ବର ୨୬ରେ ଏହା ମୁକ୍ତିଲାଭ କରିବାର ଅଛି । ବଲିଉଡ୍ ଅଭିନେତା ମୁକେଶ ତିୱାରୀ, ବଂଗାଳୀ ଅଭିନେତା ବିରାଜ ମୁଖାର୍ଜି ଏବଂ ତାପସ ପାଲ ମଧ୍ୟ ଏଥିରେ ଅଭିନୟ କରିବେ । (ସଂଗୃହୀତ) ⁂

## ଚେହେରାରେ ବୟସର ଛାପ










**ଅଛି-ନାହିଁର ଉତ୍ତର--** ୧. ରଥର ପତାକା ଏକାପରି ନୁହେଁ, ୨- ପିଲାର ଟୋପିରେ କଳା ଗାର ନାହିଁ, ୩- ଧନୁରେ ଶର ନାହିଁ , ୪- ପିଲାର ମୁଣ୍ଡର କଳି ଭିନ୍ନ, ୫- ଶିକାରୀର ପ୍ୟାଣ୍ଟ ପକେଟ୍ ଭିନ୍ନ, ୬- ତା' ସାର୍ଟର ହାତ ମଧ୍ୟ ଭିନ୍ନ, ୭- ଶିକାରୀର ପ୍ୟାଣ୍ଟ ଗାର ଭିନ୍ନ



# ପୁସ୍ତକ ପରିଚୟ

**ମହାନ୍ ଶିକ୍ଷାବିତ ଶ୍ରୀ ଜଗମୋହନ ରାଠୋର**-- ଲେଖକ- **ଶ୍ରୀ ଦୈତ୍ୟାରି ଚନ୍ଦ୍ର କର, ଲକ୍ଷ୍ମୀନାରାୟଣ ପଣ୍ଡା ଓ ଡମ୍ବରୁ ମହାନ୍ତ;** ଅଭିଳାଷ ପ୍ରକାଶନ, ସଂଜୀବନୀ ସାହିତ୍ୟ ସଂସଦ, ଭଣ୍ଡା (ଚମ୍ପୂଆ), କେନ୍ଦୁଝର-୭୫୮୦୪୪।

ଏହି ଡିମେଇ ଆକାରର ପୁସ୍ତକଟିରେ ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀ ଜଗମୋହନ ରାଠୋରଙ୍କର ବାଲ୍ୟଜୀବନ ତଥା ଶିକ୍ଷାଦାନ ପ୍ରଣାଳୀ ଏବଂ ତାଙ୍କର ଜୀବନଶୈଳୀର ତଥ୍ୟ ପରିବେଷିତ। ତାଙ୍କର ଶିକ୍ଷକତା, ଅଧ୍ୟାପକ ଜୀବନ, ନୂତନ ପାଠ୍ୟ ଖସଡ଼ା ପ୍ରସ୍ତୁତି ସହିତ ସମଗ୍ର ଶିକ୍ଷାଜଗତକୁ ତାଙ୍କର ଅବଦାନ ଅନେକ। ତାଙ୍କର ସାହିତ୍ୟିକ ଆଦର୍ଶ ତଥା ନୀତିନିୟମ ଇତ୍ୟାଦି ପାଠ କଲେ ଆଗାମୀ ଯୁବପିଢ଼ିଙ୍କୁ ଅନେକ ଉତ୍ସାହ ମିଳିବ-- ଏଥିରେ ସନ୍ଦେହ ନାହିଁ।

**ଦେବ ଶପଥ (ଶିଶୁ ନାଟକ)**-- ଲେଖକ- **ଶ୍ରୀ ବିଜୟ କୁମାର ବାରିକ,** ଉଚ୍ଚବାଲି, କେନ୍ଦୁଝର-୭୫୮୦୪୪, ମୂଲ୍ୟ-୧୨ ଟଙ୍କା ମାତ୍ର।

ଶିଶୁ-ନାଟକ ପୁସ୍ତକଟି ଡିମେଇ ୧/୮ ଆକାରର । ଭାରତମାତାର ଦୁଃଖଦୁର୍ଦ୍ଦଶାକୁ ହୃଦୟଙ୍ଗମ କରି ବିଷ୍ଣୁ ଓ ଲକ୍ଷ୍ମୀ ଏହାର ସମାଧାନର ବାଟ ଖୋଜିଛନ୍ତି ଦେବର୍ଷି ନାରଦଙ୍କ ମାଧ୍ୟମରେ । ଶେଷକଥା ପାଠକମାନେ ପଢ଼ିବା ପରେ ଜାଣିବେ।

ରଂଗିନ୍ ପ୍ରଚ୍ଛଦଟି କ୍ଷୀର ସମୁଦ୍ରରେ ଶାୟିତ ବିଷ୍ଣୁ, ଲକ୍ଷ୍ମୀମାତା ଓ ଦେବର୍ଷି ନାରଦଙ୍କ ଚିତ୍ର ଖୁବ୍ ସୁନ୍ଦର ହୋଇଛି। ଶିଶୁ ପାଠକମାନଙ୍କୁ ଏହା ଆନନ୍ଦ ଦେବ ବୋଲି ଆଶା କରୁ।

**ଆମେ ସବୁ ଫୁଲରେ**-- ଲେଖକ- **ବ୍ୟଙ୍ଗଭାରତୀ ଶ୍ରୀ ବ୍ରଜବିହାରୀ ଦାଶ,** ଅରଙ୍ଗାବାଦ, ବରୀକଟକ, ଯାଜପୁର। ମୂଲ୍ୟ-୪୦ଟଙ୍କା ମାତ୍ର।

ଏହି ଡିମେଇ ୧/୮ ଆକାରର ଶିଶୁ-କବିତା ପୁସ୍ତକରେ ବଣଭୋଜି, କଳିର ଅଳି, ଗାଆଁର ଡାକ, ବିଜୁଳି କାଟ ଇତ୍ୟାଦି ସହିତ ୧୯ଟି କବିତା ରହିଛି। କବିତାଗୁଡ଼ିକ ସରଳ ଓ ସାବଲୀଳ ତଥା ଶିକ୍ଷଣୀୟ ହୋଇଛି। ରଂଗିନ୍ ପ୍ରଚ୍ଛଦଟିରେ ଟୋପିପିନ୍ଧା ଛୋଟ ପିଲାଟାଏ ଫୁଲ ବଗିଚାରେ ପ୍ରଜାପତିକୁ ଦେଖୁଥିବାର ଦୃଶ୍ୟ ଆକର୍ଷଣୀୟ। ପୁସ୍ତକଟି ଆଦୃତ ହେବାର ଆଶା ରଖୁଛୁ।

**ଆମ ଧୂମକେତୁ ବିଜ୍ଞାନ**-- ସମ୍ପାଦକ- **ଶ୍ରୀ ହିମାଂଶୁ ଶେଖର ଫତେସିଂହ,** ଅଭ୍ୟର୍ଥନା, ଇବ୍ ଥର୍ମାଲ, ଝାରସୁଗୁଡ଼ା- ୭୬୮୨୩୪। ମୂଲ୍ୟ- ୧୨ ଟଙ୍କା ମାତ୍ର ।

ଏହି ଡିମେଇ ୧/୮ ଆକାରର ବିଜ୍ଞାନ ପୁସ୍ତକରେ ଧୂମକେତୁ ଉପରେ -- ହେଲ୍‌କପ୍ ଧୂମକେତୁ, ଧୂମକେତୁ ଅଭିଯାନ, ଧୂମକେତୁ ଓ ଅନ୍ଧ ବିଶ୍ୱାସ, ଧୂମକେତୁର ଏନ୍ତୁଡ଼ିଶାଳ ଇତ୍ୟାଦି ୧୪ଟି ବିଷୟବସ୍ତୁ ଚିତ୍ର ସହ ରହିଛି।

ଶିଶୁ ବା କିଶୋର ପାଠକଟି ଏହାକୁ ପାଠ କଲେ ଧୂମକେତୁର ସମ୍ପୂର୍ଣ୍ଣ ବିବରଣୀ ପାଇପାରିବ। ପ୍ରଚ୍ଛଦଟି ରଂଗିନ୍ ଓ ଆକର୍ଷଣୀୟ ହୋଇଛି।

---




୨୨।୮- ଜ୍ଞାନପୀଠ ବିଜେତା ପ୍ରସିଦ୍ଧ କନ୍ନଡ଼ ଲେଖକ ୟୁ. ଆର ଅନନ୍ତମୂର୍ତ୍ତିଙ୍କର ୮୨ ବର୍ଷରେ ମୃତ୍ୟୁ।

୧୩।୯- ଓଡ଼ିଶାର ବିଶିଷ୍ଟ କ୍ରୀଡ଼ାବିତ୍ ଶୁଭେନ୍ଦୁ ପାତ୍ରଙ୍କର ୭୩ ବର୍ଷରେ ପରଲୋକ।

୩୦।୮- ଲବ୍ଧପ୍ରତିଷ୍ଠ ଐତିହାସିକ ଓ ପଦ୍ମବିଭୂଷଣ ବିପିନ ଚନ୍ଦ୍ରଙ୍କର ୮୬ ବର୍ଷରେ ପରଲୋକ।

୨୫।୮- ଗାନ୍ଧି ଚଳଚ୍ଚିତ୍ର ଲାଗି ଓସ୍କାର ପୁରସ୍କାର ପାଇଥିବା ପ୍ରଖ୍ୟାତ ବ୍ରିଟିଶ ଅଭିନେତା ତଥା ନିର୍ଦ୍ଦେଶକ ଲର୍ଡ ରିଚାର୍ଡ ସାମୁଏଲ ଆଟେନବରାଙ୍କର ୯୦ ବର୍ଷରେ ମୃତ୍ୟୁ।

## ଶବ୍ଦଧନ୍ଦା-ଅକ୍ଟୋବର, ୨୦୧୪

ଶ୍ରୀ କଳ୍ପତରୁ ନାୟକ

୧। କାଗଜରେ ବା କାର୍ଡରେ ଘର କାଟି ଉତ୍ତର ଲେଖନ୍ତୁ ।
୨। ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
୩। ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
୪। ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫। ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
୬। ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨।୧୦।୨୦୧୪
୭। ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | | | | | | ★ |
| | ୨ | | | | ୩ | ୪ |
| | | ୫ | ୬ | ୭ | | |
| | | ୮ | | | | |
| | | ୯ | | | | |
| | ୧୦ | | | | | |
| ★ | ୧୧ | | | | | |

### ସୂଚନା

**ବାମରୁ ଡାହାଣ--** ୧। ବୁଧବାର (୬), ୨। ଦର୍ଶନ (୫), ୫। ବସ୍ତ୍ର (୩), ୮। ମାଘମାସ (୩), ୯। ଗଛର ପବ (୩), ୧୦। ଶ୍ରୀକୃଷ୍ଣ (୫), ୧୧। ଶ୍ରୀପଞ୍ଚମୀ (୬)।

**ଉପରୁ ତଳ--** ୧। ଅଗ୍ନି (୬), ୨। ସ୍ନାନ (୫), ୩। କୁବେର (୫), ୪। ଶ୍ରୀରାମଙ୍କ ଜନ୍ମତିଥି (୬), ୫। ବାନ୍ତି (୩), ୬। ସମଗ୍ର (୩), ୭। ମୃତ ପାପୀଙ୍କ ଶାସ୍ତିଭୋଗର ସ୍ଥାନ (୩) । *--ରମ୍ପେଇ, ବାଟିପୋଡ଼ା, ଯାଜପୁର*

---

**ସେପ୍‌ଟେମ୍ବର ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧। ଇନ୍ଦୁମତୀ, ୩। ଜନିତା, ୬। ପିଆନୋ, ୭। ଦାର, ୮। ହଲପ, ୯। ତିତିଭ, ୧୧। ହୀରକ, ୧୪। ଗଜ, ୧୬। ଜର, ୧୭। ଲବଙ୍ଗ, ୧୮। ନିଜର ।

**ଉପରୁ ତଳ--** ୨। ମନୋହରୀ, ୩। ଜନ୍ତୁପତି, ୪। ନିଦାଘ, ୫। ତାରକସି, ୬। ପିତାମହୀ, ୯। ତିରସ୍କାର, ୧୦। ଭଗବତୀ, ୧୨। ରଜନି, ୧୩। କରଜ, ୧୫। ଜଙ୍ଗମ ।

---

ସମ୍ପୂର୍ଣ୍ଣ ଠିକ୍ ଉତ୍ତରଦାତାଙ୍କ ନାମ-- **ରାଜକିଶୋର ସାହୁ,** ଓଡ଼ଗାଁ, ନୟାଗଡ଼ ।

ଏକ ଭୁଲ ଉତ୍ତର-- **ପ୍ରଦୀପ କୁମାର ଦାଶ, କୁମାର ଅଭିଜିତ ନାୟକ ଓ ସୌମ୍ୟରଞ୍ଜନ ନାୟକ; ନିଶିକାନ୍ତ ବେହେରା, ରାସେଶ୍ୱର ମହାନ୍ତ ।** ବିଳମ୍ବରେ ଆସିଥିବା ଅଗଷ୍ଟ ମାସର ଉତ୍ତର--**ପ୍ରଦୀପ କୁମାର ଦାଶ, ନିଶିକାନ୍ତ ବେହେରା ।**

---

**ପୁରୁଣା ସଂସାର ସଂଗ୍ରହ କରନ୍ତୁ-- ୨୦୧୨, ୨୦୧୩ ମସିହାର ସଂସାର ଡାକଦ୍ୱାରା ନେଲେ ପ୍ରତିଖଣ୍ଡର ମୂଲ୍ୟ ୬ ଟଙ୍କାରେ ଯୋଗାଇ ଦିଆଯିବ ।**



## ଓଡ଼ିଶା ଖବର

୨୨।୮- ଶିଶୁ ସାହିତ୍ୟରେ ସାମଗ୍ରିକ କୃତି ପାଇଁ ପ୍ରଫେସର ଜିତେନ୍ଦ୍ର ନାରାୟଣ ଦାଶ(ଦାଶ ବେନହୁର), 'ପୀଢ଼ ପର୍ବ' ପାଇଁ ନରେନ୍ଦ୍ର ଭୋଇ ଏବଂ ପରାମ୍ବା ଯୋଗମାୟାଙ୍କ ସଂସ୍କୃତ ପୁସ୍ତକ 'କଥା ସଂଗ୍ରହ' ପାଇଁ ବାଲ ପୁରସ୍କାର ଓ ଯୁବ ପୁରସ୍କାର ପ୍ରଦାନ।

୨୪।୮- ସମାଜସେବୀ ଲିଙ୍କନ ସୁବୁଦ୍ଧିଙ୍କୁ ବିଜୁ ପଟ୍ଟନାୟକ ସାହସିକତା ପୁରସ୍କାର ପ୍ରଦାନ।

୬।୯- ଗୁରୁଦିବସ ଅବସରରେ ଓଡ଼ିଶାର ୧୦ ଜଣ କୃତୀ ଶିକ୍ଷକ ରାଷ୍ଟ୍ରପତିଙ୍କ ଦ୍ୱାରା 'ରାଷ୍ଟ୍ରୀୟ ଗୌରବ' ସମ୍ମାନରେ ଭୂଷିତ।

--କଟକ କଳାବିକାଶ କେନ୍ଦ୍ରରେ ଇଣ୍ଡିଆ ଥିଏଟର ଅଲିମ୍ପିଆଡ୍ ପକ୍ଷରୁ ଆୟୋଜିତ ୨୨ତମ ବିଶ୍ୱନାଟକ ମେଳା ଉଦ୍‌ଘାଟିତ।

୬।୯- ଗଜପତି ମହାରାଜା ଶ୍ରୀ ଦିବ୍ୟସିଂହ ଦେବଙ୍କର ଅଭିଷେକ ଏବଂ ନୂତନ ୫୫ ଅଙ୍କ ୧୪୨୨ ସାଲ ପ୍ରଚଳନ।

୧୧।୯- ରାଜ୍ୟସଭା ବିଜେଡି ସଂସଦୀୟ ଦଳର ନେତା ପଦରୁ କଳ୍ପତରୁ ଦାସଙ୍କର ଇସ୍ତଫା ପରେ ନୂଆ ନେତା ଭାବେ ଦିଲ୍ଲୀପ ତିର୍କି ମନୋନୀତ।

୧୬।୯- ଆଡଭୋକେଟ୍ ପ୍ରମଥ ପଟ୍ଟନାୟକ ଓଡ଼ିଶା ହାଇକୋର୍ଟର ନୂତନ ବିଚାରପତି ନିଯୁକ୍ତ।

୧୯।୯- ବରିଷ୍ଠ ଆଇପିଏସ୍ ଅଫିସର ଡ. ବିନୟ ବେହେରା ପୁଲିସ ମହାନିର୍ଦ୍ଦେଶକ ପଦବୀକୁ ଉନ୍ନୀତ।

## ଭାରତ ଖବର

୨୧।୮- ଖଣିଜ ଦ୍ରବ୍ୟ ଉପରେ କେନ୍ଦ୍ର ସରକାର ରାଜଭାଗ ବୃଦ୍ଧିର ନିଷ୍ପତ୍ତି ନେବା ଦ୍ୱାରା ଖଣିଜ ଦ୍ରବ୍ୟ ସମୃଦ୍ଧ ରାଜ୍ୟଗୁଡ଼ିକର ରାଜସ୍ୱ ଆୟ ପ୍ରାୟ ପନ୍ଦର ହଜାର କୋଟି ଟଙ୍କା ବୃଦ୍ଧି ପାଇବ।

-- ଚଳିତ ବର୍ଷର ସମ୍ମାନଜନକ ଦ୍ରୋଣାଚାର୍ଯ୍ୟ ପୁରସ୍କାର ରାଜ୍ୟର ନୌଚାଳନା କୋଚ୍ ଜୋସ୍ ଜାକବ, ବକ୍ସିଂକୋଚ୍ ଜି. ମନୋହରନ୍, ଆଥଲେଟିକ୍ କୋଚ୍ ଏନ୍ ଲିଙ୍ଗପ୍ପା ଓ ଜୁଡୋ କୋଚ୍ ଗୁରୁ ଚରଣ ସିଂହଙ୍କୁ ପ୍ରଦାନ।

୨୬।୮- କଲ୍ୟାଣ ସିଂହ(ରାଜସ୍ଥାନ), ବାଜୁଭାଇ ରୁଦାଭାଇ ଭାଲା (କର୍ଣ୍ଣାଟକ), ସି. ବିଦ୍ୟାସାଗର ରାଓ(ମହାରାଷ୍ଟ୍ର), ମୃଦୁଳା ସିହ୍ନା (ଗୋଆ)ର ନୂଆ ରାଜ୍ୟପାଳ ନିଯୁକ୍ତ।

୩୧।୮- କେନ୍ଦ୍ର ସରକାରୀ କର୍ମଚାରୀ ଓ ପେନ୍‌ସନ୍‌ଧାରୀଙ୍କର ମହଙ୍ଗା ଭତ୍ତା ୭ ପ୍ରତିଶତ ବୃଦ୍ଧ ପାଇଁ ନିଷ୍ପତ୍ତି।

୬।୯- ଭାରତକୁ ୟୁରାନିୟମ୍ ବିକ୍ରି ପାଇଁ ଅଷ୍ଟ୍ରେଲିଆ ପ୍ରଧାନମନ୍ତ୍ରୀ ଟୋନି ଆବଟ ଓ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କ ମଧ୍ୟରେ ଆଣବିକ ଚୁକ୍ତି ସ୍ୱାକ୍ଷରିତ।

୬।୯- ଯେ କୌଣସି ଅପରାଧ ପାଇଁ ଧାର୍ଯ୍ୟ ସର୍ବାଧିକ ଦଣ୍ଡର ଅଧା ସମୟ ଜେଲରେ ବିତାଇଥିବା ବିଚାରାଧୀନ ବନ୍ଦୀମାନଙ୍କୁ ମୁକ୍ତ କରିବା ପାଇଁ ସୁପ୍ରିମ୍‌କୋର୍ଟର ନିଷ୍ପତ୍ତି।

--କାଶ୍ମୀରରେ ଭୟଙ୍କର ବନ୍ୟା ଯୋଗୁ ୨୨୦ରୁ ଅଧିକ ଲୋକଙ୍କ ମୃତ୍ୟୁ। ଏହି ବନ୍ୟା ଗତ ୬ ଦଶନ୍ଧିର ରେକର୍ଡ କରିଥିବାରୁ ଜାତୀୟ ବିପର୍ଯ୍ୟୟ ଭାବେ ଘୋଷିତ ଓ ପ୍ରଧାନମନ୍ତ୍ରୀଙ୍କର ହଜାର କୋଟି ଟଙ୍କା ପ୍ରଦାନ।

୧୫।୯-- ଭାରତ ଓ ଭିଏତ୍‌ନାମ ମଧ୍ୟରେ ୭ଟି ରାଜିନାମା ସ୍ୱାକ୍ଷରିତ। ଦୁଇ ଦେଶର ରାଜଧାନୀ ହାନୋଇ ଓ ନୂଆଦିଲ୍ଲୀ ମଧ୍ୟରେ ବିମାନ ଚଳାଚଳ ନିଷ୍ପତ୍ତି।

୧୮।୯- ଆଗାମୀ ୫ ବର୍ଷରେ ଭାରତରେ ୨୦୦୦ କୋଟି ଡଲାର ପୁଞ୍ଜି ନିବେଶ କରିବାକୁ ଚୀନ ରାଷ୍ଟ୍ରପତିଙ୍କ ପ୍ରତିଶ୍ରୁତି। ମାନସରୋବରକୁ ନାଥୁଲା ଦେଇ ଯାତ୍ରାମାର୍ଗ ଖୋଲାଯିବା ସହିତ ୧୨ଟି ରାଜିନାମା ସ୍ୱାକ୍ଷରିତ।

୧୯।୯- ଭାରତୀୟ ବଂଶୋଦ୍ଭବ ରିଚାର୍ଡ ବର୍ମା ଭାରତରେ ଆମେରିକାର ରାଷ୍ଟ୍ରଦୂତ ଭାବେ ଅବସ୍ଥାପିତ।

-- ମୁମ୍ବାଇରେ 'ସିପ୍ଲେନ୍' ସେବା ଆରମ୍ଭ। ମୁମ୍ବାଇରୁ ଲୋନାଓ୍ୱାଲା ଯିବା ପାଇଁ ୩୦ ମିନିଟ୍ ଲାଗିଲା।

## ବିଦେଶ ଖବର

୩୧।୮- ପ୍ରଧାନମନ୍ତ୍ରୀଙ୍କ ବହିଷ୍କାର ଦାବିରେ ପାକିସ୍ତାନରେ ବିଦ୍ରୋହ। ନଓ୍ୱାଜ ସରିଫ୍‌ଙ୍କ ଇସଲାମାବାଦ ତ୍ୟାଗ।

୧୯।୯-- ଦକ୍ଷିଣ କୋରିଆର ଇଞ୍ଚିୟନଠାରେ ୧୭ଶ ଏସୀୟ କ୍ରୀଡ଼ା ପ୍ରାୟ ୬୦,୦୦୦ ଦର୍ଶକଙ୍କ ଉପସ୍ଥିତିରେ ଉଦ୍‌ଘାଟିତ। ୪୫ଟି ରାଷ୍ଟ୍ରର ୬୫୦୦ ପ୍ରତିଯୋଗୀଙ୍କୁ ନେଇ ୧୫ ଦିନ ପର୍ଯ୍ୟନ୍ତ ଏହି କ୍ରୀଡ଼ା ଚାଲିବ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597